# ତିମିର ତୃଷ୍ଣା

ରମେଶପ୍ରସାଦ ପାଣିଗ୍ରାହୀ

ଗ୍ରନ୍ଥ ବୁକ୍ ଷ୍ଟୋର

ବ୍ରହ୍ମପୁର (ଗଞ୍ଜାମ)

ତିମିର ତୃଷ୍ଣା

ରଚନା :

ରମେଶପ୍ରସାଦ ପାଣିଗ୍ରାହୀ

ପ୍ରକାଶକ :

ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର

ବିଜୟ ବୁକ୍ ଷ୍ଟୋର

ବାରକ୍ସ, ବ୍ରହ୍ମପୁର-୧



ମୁଦ୍ରଣ :

ସନ୍ତୋଷ ପ୍ରିଣ୍ଟର୍ସ, ବ୍ରହ୍ମପୁର-୯

ପ୍ରଥମ ପ୍ରକାଶ—୧୯୭୮

ଦ୍ୱିତୀୟ ପ୍ରକାଶ : ୧୯୮୩, ତୃତୀୟ ପ୍ରକାଶ : ୧୯୯୭

ମୂଲ୍ୟ—ସାଦା ଟ ୨୦-୦୦ ବନ୍ଧାଇ ଟ ୨୭-୦୦

**TIMIRA TRUSHNA**

Written by :

**Sri Ramesh Prasad Panigrahy**

Published by :

**Sri Bhaskar Chandra Patro**

Bijoy Book Store

Barracks, Berhampur-1



Printed at :

**Santosh Printers,** Berhampur-9

1st Edition—1978

2nd Edition : 1983, 3rd Edition 1997

**Price :** Paper Back **Rs. 20/—**

Bound **Rs. 27/—**

SBN : 81—85759—16—2

ନିର୍ଦ୍ଦେଶକ ଡ଼ଃ ସୁରେନ୍ଦ୍ର ପ୍ରସାଦ ଦାସଙ୍କୁ

'ତିମିର ତୃଷ୍ଣା'

ଆପଣଙ୍କ ଓ ମୋର ପରିଚୟର ପ୍ରଥମ ସେତୁ । ଏବଂ ତା ପରେ ଦକ୍ଷିଣ ଓଡ଼ିଶାରେ ଆମେ ଗଢ଼ିଥିବା ନାଟ୍ୟ କ୍ଲବର ପ୍ରଥମ ଅନୁଷ୍ଠାନ ଗଂଜାମ କଳା ପରିଷଦ, ଯାହା କି ବ୍ୟକ୍ତିସ୍ୱାର୍ଥର ଲେଲିହାନ ଅଗ୍ନିକୁଣ୍ଡରେ ଆଜି ପ୍ରାୟ ଭସ୍ମୀଭୂତ । କିଛି ଦିନ ପରେ ହୁଏତ ଆମେ ଜଳେଇଥିବା ପାଦପ୍ରଦୀପ ସଂପୂର୍ଣ୍ଣ ଭାବେ ଲିଭେଇ ନେବେ ସେମାନେ; ଯେଉଁମାନେ ନାଟ୍ୟ ଅନୁଷ୍ଠାନଗୁଡ଼ିକୁ ଦେଶ ସାରା ସ୍ୱାର୍ଥସାଧନର ଇଜ୍‌ଲାସ୍ କରି ଆମ୍ଭମାନଙ୍କୁ ଗିନିପିଗ୍ ଭଳି ବ୍ୟବହାର କରି ଆସିଛନ୍ତି ।

ତଥାପି ଆମେ ଜଳିବା, କାହାକୁ ଜଳେଇ ନ ପାରିଲେ, ନିଜେ ନିଜେ ।

ଆପଣଙ୍କର ଗୁଣମୁଗ୍ଧ

**ରମେଶ ପ୍ରସାଦ ପାଣିଗ୍ରାହୀ**

# 'ତମିର ତୃଷ୍ଣା'ର ଅଂଶୀଦାରମାନେ

ପ୍ରଥମ ପ୍ରଯୋଜନା : ରେଭେନ୍ସା ମହାବିଦ୍ୟାଳୟ ନାଟ୍ୟ ସଂସଦ
(୧୯୬୫-୬୬ ବର୍ଷୀୟ ସଂସ୍ଥା)

ନିର୍ଦ୍ଦେଶନା : ଅଧ୍ୟାପକ ପ୍ରଫୁଲ୍ଲକୁମାର ମହାନ୍ତି

ଦ୍ୱିତୀୟ ପ୍ରଯୋଜନା : କୃଷ୍ଣଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟ
୧୯୬୬-୬୭

ନିର୍ଦ୍ଦେଶନା : ଡା: ସୁରେନ୍ଦ୍ର ପ୍ରସାଦ ଦାସ

ତୃତୀୟ ପ୍ରଯୋଜନା / ଚତୁର୍ଥ ପ୍ରଯୋଜନା } ଜୟପୁର ଓ ମାଛକୁଣ୍ଡ : ୧୯୭୨, ୧୯୭୩

ନିର୍ଦ୍ଦେଶନା : ଶ୍ରୀ ଗୋପାଳକୃଷ୍ଣ ବେହେରା

ପଞ୍ଚମ ପ୍ରଯୋଜନା : ଯାନ୍ତ୍ରିକ : ପୁରୀ : ୧୯୭୪

ନିର୍ଦ୍ଦେଶନା : ଶ୍ରୀ ନିତ୍ୟାନନ୍ଦ ମିଶ୍ର

ଷଷ୍ଠ ପ୍ରଯୋଜନା : ପାଥୋରପୁରୀ, ପୁରୀ : ୧୯୭୬

ନିର୍ଦ୍ଦେଶନା : ରମେଶ ପାଣିଗ୍ରାହୀ

ସପ୍ତମ ପ୍ରଯୋଜନା : ବିନୋଦବିହାରୀ କ୍ଲବ୍, ଛତ୍ରପୁର : ୧୯୭୭

ନିର୍ଦ୍ଦେଶନା : ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର

ମେ: ବର୍ମା : ଶ୍ରୀ ପୂର୍ଣ୍ଣଚନ୍ଦ୍ର ପାତ୍ର

ତପନ ବର୍ମା : ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର

ମୁକ୍ତିକାନ୍ତ : ଅଧ୍ୟାପକ ନୃସିଂହାନନ୍ଦ ମହାପାତ୍ର

ଗଜେନ୍ଦ୍ର : ଶ୍ରୀ କିଶୋରଚନ୍ଦ୍ର ପଟ୍ଟନାୟକ

ହରିହର : ଶ୍ରୀ ଗଣପତି ପାଢ଼ୀ

ଶ୍ରୀକାନ୍ତ : ଶ୍ରୀ ପ୍ରଫୁଲ୍ଲ ସେନାପତି

ଡ଼ାକ୍ତର : ଶ୍ରୀ ପ୍ରଭାତକୁମାର ପାଢ଼ୀ

ରଞ୍ଜନ୍ : ଶ୍ରୀ ମହାଦେବ ପଣ୍ଡା

ଶକ୍ତା :

ଶିଖା : ନମ୍ରତା

ମଞ୍ଚସଜ୍ଜା ସ୍ଥିରଚିତ୍ର : ଶ୍ରୀ ବିପିନବିହାରୀ ସାହୁ, ନୃସିଂହ ମହାପାତ୍ର,
ଅମ୍ବିକା ମିଶ୍ର

ଆଲୋକ ଓ ଶବ୍ଦ : କେଦାର ଆଚାର୍ଯ୍ୟ

ସଙ୍ଗୀତ : ବଟକୃଷ୍ଣ ତ୍ରିପାଠୀ, ଜୟ ମହାରଣା, ରମେଶ ପଣ୍ଡା

ଅଷ୍ଟମ ପ୍ରଯୋଜନା : ସାକ୍ଷୀଗୋପାଳ : ୧୯୭୮

ନିର୍ଦ୍ଦେଶନା : ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ

## ଏହି ଲେଖକଙ୍କର

ମୁଁ, ଆମ୍ଭେ ଓ ଆମ୍ଭମାନେ
ବନ୍ଧୁ ଓ ବଳୟ
ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସମ୍ପର୍କରେ
ଧୃତରାଷ୍ଟ୍ରର ଆଖି
ଆତ୍ମଲିପି
ଗୁଣ୍ଡା
ମହାନାଟକ
କମଳପୁର ଡାକଘର
ଯେ ପକ୍ଷୀ ଉଡ଼େ ଯେତେଦୂର
ଠାକୁର ଅନନ୍ତ ଚଉବାହାକୁ
ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ଦୁର୍ଘଟଣାବଶତଃ
ମୁକ୍ତମଣ୍ଡପ
ତିମିର ତୃଷ୍ଣା
ଉଡନ୍ତା ପାହାଡ଼ର ଦର୍ଜ
ଅପ୍ରୀତିକର ନାଟକ
ହାଣ୍ଡିକୁ ହୋମିଓପାଥି
ଆନନ୍ଦ ନଗରକୁ ଯାତ୍ରା
ପକାକମଳ ପୋଡ ଛତା
ଡାହାଣୀ
ତପସ୍ୟା

## ତମିର ତୃଷ୍ଣା : ତୃତୀୟ ସଂସ୍କରଣ ପାଇଁ

'ତମିର ତୃଷ୍ଣା' ମୋ' ନାଟ୍ୟ ଜୀବନର ଦ୍ୱିତୀୟ ନାଟକ । ୧୯୬୫-୬୬ ରେ ଏହାର ରଚନା ଓ ମଞ୍ଚନ ଶେଷ ହୋଇଥିଲା । ଆଜି ତିନୋଟି ଦଶକର ବ୍ୟବଧାନ ପରେ ମୁଁ ଦେଖୁଛି—ଏଇ ନାଟକର ଚରିତ୍ର ଚୟନ ଓ ସଂଳାପର କାବ୍ୟିକ ନକ୍ସା ଏ ପର୍ଯ୍ୟନ୍ତ ଓଡ଼ିଆ ନାଟକର ପୁନରାବୃତ୍ତ ହୋଇନାହିଁ । ସମଗ୍ର ଓଡ଼ିଆ କଥା ଓ ନାଟ୍ୟ ସାହିତ୍ୟରେ ଏହି ନାଟକରେ ଚର୍ଚ୍ଚିତ ପ୍ରତି ଚରିତ୍ର ମୁକ୍ତିକାନ୍ତ ଏ ପର୍ଯ୍ୟନ୍ତ ପୁନରାବୃତ୍ତ ହୋଇନାହିଁ । ପ୍ରତିଚରିତ୍ର ଚୟନରେ ଆଧୁନିକ ଓଡ଼ିଆ ସାହିତ୍ୟରେ ଏହା ପ୍ରଥମ ଉଦାହରଣ । ଏହି ଜନ୍ମରେ କିଛି ଦିନପରେ ଲିଖିତ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ "ନର କିନ୍ନର" ଉପନ୍ୟାସର ଜଜ୍‌କୁ ନିଆଯାଇପାରେ । କିନ୍ତୁ 'ଜଜ୍' ଏକ ପ୍ରତୀକ । ସେ ସ୍ୱାଧୀନତାର ଯୁଗ-ଲିଙ୍ଗ ଅଟେ । ତେଣୁ ସ୍ୱାଧୀନୋତ୍ତର ଭାରତର "ରବର କଣ୍ଢେଇ"ମାନଙ୍କୁ ଧରି ସେ ଜୀବନ୍ୟାସର ଉପାୟ ଅନ୍ୱେଷଣ କରୁଛି ।

ମୁକ୍ତିକାନ୍ତ ପ୍ରତୀକ ନ ହୋଇପାରେ । ମୁକ୍ତିକାନ୍ତର କିନ୍ତୁ ଏକ ଜୀବନ ଜିଜ୍ଞାସା ଅଛି । ତାକୁ ଅନ୍ୱେଷା ମଧ୍ୟ କୁହାଯାଇ ପାରେ । ଧନତାନ୍ତ୍ରିକ ସମାଜର ଆରମ୍ଭରେ ଭୌତିକ ଆଭିଜାତ୍ୟକୁ ନେଇ ଏଠାରେ ଅନେକ ବ୍ୟକ୍ତିନଷ୍ଟ ଓ ସାମାଜିକ ଦ୍ୱନ୍ଦ୍ୱର ସୂତ୍ରପାତ ହୋଇ-ଥାଏ । ମୁକ୍ତିକାନ୍ତ ଏ ସବୁର ଶିକାର ।

ଇଂରେଜମାନେ ଗଲାପରେ ପନ୍ଦର ଅଗଷ୍ଟ ଦିନ ଯୋଉମାନେ ତିରଙ୍ଗୀ ପତାକା ଉଡ଼େଇଥିଲେ ସେମାନେ କ୍ଷମତାକୁ ଇଷ୍ଟଇଣ୍ଡିଆ କମ୍ପାନୀ ବୋଲି ବୁଝିଥିଲେ । ଗାଁ ଲୋକେ ଜମିଦାରିଆ ଉଆସମାନଙ୍କୁ ଆଭିଜାତ୍ୟ ବୋଲି ବୁଝିଥିଲେ । ଏସବୁ ଭିତରେ ଦଳେ ବିଜ୍ଞାନଭିତ୍ତିକ ପାଠୁଆ (ଡାକ୍ତର ଓ ଇଞ୍ଜିନିଅର ଇତ୍ୟାଦି) ନିଜର ନୂତନ ଆଭିଜାତ୍ୟକୁ ଜାହିର କରିଥିଲେ ଆଧୁନିକତା ନାମରେ । ତପନ ବର୍ମା ହେଉ ତାଲିକାର

ଆଧୁନିକ । କୋଉ ଏକ ଖରାବେଳେ ଭଲ ଷ୍ଟାର୍ ହୋଟେଲରେ ଟେବୁଲ ଆଗରେ ପିଟର୍ ସ୍କଚ୍‌ରୁ ଦୁଇ ପେଗ୍ ଥୋଇ ଚିକେନ୍ ମାଞ୍ଚୁରିଆନ୍ କମ୍ବା କବାବ୍ ଖାଇଲେ ଆଜିକାଲି ମଧ୍ୟ ସେମାନେ ନିଜକୁ ଆଧୁନିକ ବୋଲି ମନେ କରୁଛନ୍ତି । ଘରେ ଚୂଡ଼ା ଖାଇଲେ ଗାଉଁଲି । ଅଣ୍ଡା ଷ୍ଟେସନ୍ ନ ମିଳରେ ନୁଡ଼ୁଲସ୍ ଖାଇ ଆଧୁନିକତା ସାଙ୍ଗକୁ ଆଭିଜାତ୍ୟ ମଧ୍ୟ ଜାହିର କରି ହଉଛି । ଜଣେ ଇଞ୍ଜିନିୟରଙ୍କ ପତ୍ନୀଙ୍କ ସାଙ୍ଗରେ କଥାବାର୍ତ୍ତା ହେବାରୁ ସିଏ କହିଲେ ତାଙ୍କୁ ଖଟ ଉପରେ ପଡ଼ିଥିବା ଚଦରର (Bed Sheet) ଦାମ ବାରଶହ ଟଙ୍କା । ଏଣୁ ଆଭିଜାତ୍ୟ କଣିବା ପାଇଁ ବଡ଼ ବଡ଼ କଥା ମଧ୍ୟ କହିବା ଆବଶ୍ୟକ ।

ମୁକ୍ତିକାନ୍ତକୁ ଏପରି ଏକ ସମାଜରେ "ପାଗଳ" କୁହାଗଲେ ଆଜିମଧ୍ୟ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଅସଲ କଥା ହେଲି ପାଗଳ ଓ ସୁସ୍ଥ ମସ୍ତିଷ୍କର ଲୋକଙ୍କ ଭିତରେ ଯେଉଁ ପ୍ରଭେଦ ରେଖାଟି ଟଣା ଯାଇଛି ସେଥିରୁ ସ୍ପଷ୍ଟ କିଛି ବୁଝିହେଉ ନାହିଁ । ପାଗଳା ଗାରଦରୁ ଯେଉଁମାନେ ଆସନ୍ତି ସେମାନେ ପାଗଳ ହେବା ପାଇଁ ବାଧ୍ୟ ନୁହନ୍ତି କମ୍ବା ସୁସ୍ଥ ମସ୍ତିଷ୍କମାନଙ୍କର ସମାଜରେ ବାସ କରୁଥିବା ତଥାକଥିତ ସୁସ୍ଥ ମସ୍ତିଷ୍କ ମାନେ ସୁସ୍ଥ ହୋଇଥିବେ ବୋଲି ମନେ କରିବା ସମୀଚୀନ ନୁହେଁ ।

ଏପରି ଏକ ପ୍ରେକ୍ଷାପଟରେ 'ତମିର ତୃଷ୍ଣା' ନାଟକକୁ ଦେଖିଲେ ଏଥିରେ କେବଳ ସ୍ୱାଧୀନୋତ୍ତର ସମାଜତାନ୍ତ୍ରିକ ପରିବର୍ତ୍ତନର ନକ୍ସାଟିଏ ମିଳୁନାହିଁ—ତତ୍ ସଙ୍ଗେ ମାନସିକତାର ଏକ ସ୍ପଷ୍ଟ ଚିତ୍ର ମଧ୍ୟ ମିଳୁଛି । ମୁକ୍ତିକାନ୍ତ ତାର ଚରମ ସଂଳାପ ଭିତରେ ବସ୍ତୁବାଦୀ ଆଧୁନିକତା ଓ ଆଭିଜାତ୍ୟ ସମ୍ପର୍କରେ ଯେଉଁ ସ୍ପଷ୍ଟ ମତ ପ୍ରଦାନ କରୁଛି ତାହାହିଁ ତାକୁ ପାଗଳ ବୋଲି ପ୍ରମାଣିତ କରୁଛି । ବସ୍ତୁବାଦୀମାନେ ଭାବୁଛନ୍ତି ମୁକ୍ତିକାନ୍ତ କେବଳ ପ୍ରଳାପ କରୁଛି । କିନ୍ତୁ ମୁକ୍ତିକାନ୍ତ ପାଗଳାଗାରଦ ଠାରୁ ଆରମ୍ଭ କରି ସଭ୍ୟ ପୃଥିବୀ ପର୍ଯ୍ୟନ୍ତ ସବୁଠି ମସ୍ତିଷ୍କର ଦୁଆରଂ ଝରକା ଖୋଲି ରଖିଛି ବୋଲି ତା' ଭିତରକୁ ସତ୍ୟର ଆଲୋକ ପ୍ରକାଶ କରି ପାରୁଛି ଏବଂ ତଥାକଥିତ ସଭ୍ୟ ଲୋକେ ବସ୍ତୁବାଦ ଦ୍ୱାରା ସେଇ ଦୁଆର ଝରକାଗୁଡ଼ିକୁ ମୁଦ୍ରିତ କରି ରଖିଛନ୍ତି ବୋଲି ସୁସ୍ଥତା ଓ ସତ୍ୟର ଆଲୋକ ସେମାନଙ୍କୁ ଦୃଶ୍ୟମାନ ହେଉନାହିଁ ।

ଷଷ୍ଠ ଦଶକର ମଧ୍ୟଭାଗରେ ଏହି ନାଟକଟି ଲିଖିତ । ଠିକ୍ ସେହି ସମୟରେ ପ୍ରକାଶିତ R. D. Laing ଙ୍କର The Divided Self ଗ୍ରନ୍ଥରେ ଲେଖକ କହିଛନ୍ତି, "I am aware that the man who is said to be deluded may be in his delusion telling me the truth, and this in no equiocal or metaphorical sense, but quite literally, and that the cracked mind of the schizophrnic may let in light which does not enter the intact minds of many sane people whose minds are closed" (The Divided Self, P. 27)

ଏବେ ତିରିଶି ବର୍ଷ ପରେ ଏହି ମୁଖବନ୍ଧ ଲେଖିଲା ବେଳକୁ ମନେ ଲାଗୁଛି ୬୭ ମସିହାରେ ସାରା ବିଶ୍ୱରେ ଏପରି ଏକ ଚିନ୍ତା ଖେଳି ଯାଇଥିଲା ଏବଂ ଓଡ଼ିଆ ସାହିତ୍ୟରେ ତାର ପ୍ରଥମ ଉନ୍ମେଷ ଘଟିଥିଲା "ତିମିର ତୃଷ୍ଣା" ନାଟକରେ ।

ରମେଶ ପ୍ରସାଦ ପାଣିଗ୍ରାହୀ

"ମୁଁ, ଆମ୍ଭେ ଓ ଆମ୍ଭେମାନେ"
୧୦୫, ରସୁଲଗଡ଼
ଭୁବନେଶ୍ୱର—୧୦

# ପ୍ରଥମ ଅଙ୍କ



[ ମେ. ବର୍ମାଙ୍କ ଘରେ ଏକ ସକାଳ । ସକାଳର ସୂର୍ଯ୍ୟାଲୋକ ବଗିଚା ଓ ଡ୍ରଇଁ ରୁମ୍ ପଛପଟ ଗିଲ୍ ଦେଇ ମଂଚ ଉପରକୁ ଟେନାଏଁ କମଳା ରଙ୍ଗ ଧସେଇ ଆସିଛି । ହରିଆ କଞ୍ଚା ଫୁଲ ନେଇ ବଗିଚାପଟୁ ଆସି ସିଢ଼ିତଳ ରୁମ୍ ଭିତରକୁ ଚାଲିଗଲା । ରିକ୍ତା ପରେ ପରେ ପୂଜାଥାଳି ଧରି ବଗିଚା ପଟକୁ ଗଲା । ଗଜେନ୍ଦ୍ର ବାହାର ପଟ ଦୁଆର ଦେଇ ହରିଆକୁ ଡାକିଲା । ଶିଖା ହାତରେ ଖଣ୍ଡେ ବହିଧରି (ନାଇଟ୍ ଗାଉନ୍ ପିନ୍ଧି) ଆସିଛି ]

ଗଜେନ୍ଦ୍ର ॥ (ଗେଲରେ) ହରିଆ—ହରିହର !

ଶିଖା ॥ (ହାତରେ ବହି, ମୁହଁରେ ବିରକ୍ତି) ଓଃ—ଏ ଗୁଡ଼ା ସକାଳୁ ଟିକେ ପଢ଼େଇ ବି ଦେବେନି ! କ'ଣ କହୋ ଗୁମାସ୍ତା ବାବୁ ?

ଗଜେନ୍ଦ୍ର ॥ ଆଜ୍ଞା, ନମସ୍କାର । ମା' କାଲିକି ସକାଳୁ ସକାଳୁ ଡକାଇଥିଲେ ଯେ . ......

ଶିଖା ॥ କଏ ? ଭଉଜ ? ବଟିଗ୍ଣ ସେଇଠେ ସୂର୍ଯ୍ୟପୂଜା କରୁଥିବେ ।

ଗଜେନ୍ଦ୍ର ॥ କରିବେନା ? ଧର୍ମପରାୟଣା ନାରୀ ! ବୋଧହୁଏ ଖଣ୍ଡିଏ ତ ଦେଖିଲ । ପୂଜା ପର୍ବରେ ଭାରିମନ । ଯାହା କୁହ ମା'— ଆଜକାଲିକା ଏ ଯୋଉ ଶିକ୍ଷିତା ଝିଅ, ସେମାନଙ୍କ ପକ୍ଷରେ ଏ ସବୁ ସିନ୍ଦୂର, ଫୁଲ, ଚନ୍ଦନ କ'ଣ କମ୍ ଭୀଷଣ କାମ ?

ଶିଖା ॥ (ହାତ ଦେଖେଇ) ସେ ପଟେ ଯାଅ । ଭଉଜ ସେ ପଟେ ଥିବେ ।

(ଶିଖା ଭିତରକୁ ଯାଇଚି)

ଗଜେନ୍ଦ୍ର ॥ ହରିହର......ମତେ ଟିକିଏ ଧର—ଟିକିଏ ଧର । ମୁଁ ମୂର୍ଚ୍ଛା ହୋଇଯିବି— ଭୀଷଣ ହୋଇଯିବି ।

ହରିଆ ॥ (ପରଦା ଟେକି ବାହାରି) ॥ କଏ ? ଗୁମାସ୍ତା ବାବୁ ?

ଗଜେନ୍ଦ୍ର ॥ ଆସ···ପାଖକୁ ଆସ···ପାଖକୁ ଆସ ହରିହର । ତମ ଦେଈଙ୍କର ଚଣ୍ଡୀମୂର୍ତ୍ତି ଦେଖି ସକାଳୁ ସକାଳୁ ମୁଁ ତ ବେହୋସ୍ ହୋଇ ଯାଇଥାନ୍ତି ରେ—

ହରିଆ ॥ ମା' ତୁମକୁ ସେତିକବେଳୁ ଖୋଜୁଚନ୍ତି—ତମେ ଯାଇ ବେଳ ଆଠଟା ବେଳକୁ ଆସୁଛ ଗୁମାସ୍ତା ବାବୁ ?

ଗଜେନ୍ଦ୍ର ॥ ଓଃ, ହୋ·—ଆମେ ତ ବେକାରିଆ ମଣିଷ ନୋହୁ— ବଳବାଡ ଅଛୁ—ମୂଳିଆ, ହଳିଆ ଅଛନ୍ତି—ଗୁଆ, ବରାଡ଼, କୁକୁର, ମାଙ୍କଡ ତାଙ୍କ ଧନ୍ଦା ତ ଫେରେ ଅଛୁ । ଆମେ ତ ଆଉ ତମ ଭଳି ଛେଳା ହୋଇନୁ । ସକାଳୁ ଉଠି କଜଳ ନଗେଇ ଫୁଲଟିଏ କାନରେ ଖୋସି...ହଉ, ଗୁଡ଼ ଗୁଡ଼ ! ମା' କଣ ?...(ପୂଜାର ମୁଦ୍ରା ଦେଖାଇ) ।

ହରି ॥ ହ ।

ଗଜେନ୍ଦ୍ର ॥ କଣ ଏମିତି ଭୀଷଣ କାମଟେ ଥିଲା ଯେ ସକାଳୁ ସକାଳୁ ତଲବ କରି ପକେଇଲେ ?

॥ ଦୁଇ ॥

ହରି ॥ ତମେ ପଗୁରୁନା—ମୋତେ କହିଲେ ଡ଼ାକ ଦେବାକୁ—ମୁଁ ଡ଼ାକ ଦେଲି ।

ଗଜେନ୍ଦ୍ର ॥ କହୁ ଜାଣି ପାରୁନୁ···ହ୍ୟାପ ଜାଣି ଖାଁଥିଟିଏ ତ ।
(ଶକ୍ତା ଆସିଛୁ । ହରିଆ ଭିତରକୁ ଯାଇଛୁ ।)
ଆଜ୍ଞା ନମସ୍କାର ।

ଶକ୍ତା ॥ (ହେଗ ଦେଇତ) ତମେ ଆସିଲେ ଗୁମାସ୍ତାଏ ?

ଗଜେନ୍ଦ୍ର ॥ ହେଁ, ହେଁ···ଆଉ ନ ଆସି ଚ୍ଛୁରି ଅଛୁ ଆଜ୍ଞା ? ନନ୍ନଆ ଗୋଟେ ଗୋବରି ଚଡ଼େଇ ପୋଷୁଚ ଯେ—ତା ଭଉଣୀ ଶେର୍କିର ଶଙ୍ଖୀ ବଦଲେଇ କାମୁଡ଼ ଦେଲା । ଅନୁକୂଳଟା ତ ସେଇଠୁ ଆରମ୍ଭ ହୋଇ ଢ଼େର ହୋଇଗଲା । ହରିହରି ମତେ ଖବରଟା ଦେଲା—କହିଲା ମା କହିଛନ୍ତି କ'ଣ ଖୁଷଣ କାମ ଅଛୁ । (ହରି ଟିକେ ଗୁହିଁ ଗୁ'ଟେ଼ ନେଇ ଉପରକୁ ଯାଇଛୁ) ।

ଶକ୍ତା ॥ ହଉ, ତମେ ଟିକଏ ଘର ଭିତରକୁ ଆସ ।

ଗଜେନ୍ଦ୍ର ॥ କ'ଣ ଆଜ୍ଞା କାମଟା··· ··

ଶକ୍ତା ॥ ଆଃ–·· ତମେ ଆସନା ଘର ଭିତରକୁ ।
(ଶକ୍ତା ଆଗେ ଆଗେ, ଗଜେନ୍ଦ୍ର ପଛେ ପଛେ ଘର ଭିତରକୁ ଯାଉ ଯାଉ)

ଶକ୍ତା ॥ ତମେ କାଲି ସେ ନେଉଳ ବାବାଙ୍କ ପାଖକୁ ଯାଇଥିଲ ?

ଗଜେନ୍ଦ୍ର ॥ ଆଜ୍ଞା—ସବୁ କହିଲି—କଣ ତ ରିଷ୍ଟ ପଡ଼ିଚି ବୋଲି କହୁଥିଲେ । ଗ୍ରେଟିଆ କାଠର ଗୋଟିଏ ହୋମ ହେବ । ପ୍ରାୟଶ୍ଚିତ୍ତ ହେବ । ଶହେ ଆଠ ପାଣି ଲାଗି ହେବ; ଲକ୍ଷେ ବେଲପତ୍ର ଆଉ ଗଞ୍ଜେଇ ଟିକଏ ପୂଜା କରି ବିନାଥ ମହାପ୍ରଭୁଙ୍କୁ ଶାନ୍ତ କରିବାକୁ ପଡ଼ିବ । ଏଇତ ବିଧାନ··· ମାନେ ଖୁଷଣ······

॥ ତିନି ॥

ରକ୍ତା ॥ ତମେ ତାଙ୍କୁ ଟିକେ ଘରଆଡ଼େ ଆଣିଲନି ?

ଗଜେନ୍ଦ୍ର ॥ ନେଉଳ ବାବା ତ କସ୍ମିନ୍ କାଳେ କୁଆଡ଼େ ଯାଆନ୍ତିନି । ବଡ଼ ଭୀଷଣ ବାବା କନା, ଭୀଷଣ ସାଧନା, ପିଢ଼ିରେ ବସିଗଲେ ଖଣ୍ଡମଣ୍ଡଳ ସମସ୍ତ ଖବର ତାଙ୍କୁ ଭୀଷଣ ଭାବରେ ଦିଶେ ।

ରକ୍ତା ॥ ହଉ ତମେ ଆସ—। ପଚିଶଟା ଟଙ୍କା ନେଇ ବାବାଙ୍କୁ ପଚାରି ଯାହା ଯାହା ବିଧାନ କରିବ ।

ଗଜେନ୍ଦ୍ର ॥ ଭିତରକୁ ଯିବ ? (ଫୁସ୍‌ଫୁସ୍ ହୋଇ) ବାବୁ ଉଠି ନାହାନ୍ତି ?

ରକ୍ତା ॥ ବାବୁ ? (ଅନ୍ୟମନସ୍କ) ଏଁ…ହଁ…ଶୋଇଥିବେ ! ତମେ ଆସ ।

(ଯାଇଚନ୍ତି ଗଜେନ୍ଦ୍ର ଓ ରକ୍ତା)

(ହରି ଆସିଚି । ହରି ମୁହଁରେ ଆଉ ଦେହସାରା ଚା' ଢଳା ହୋଇଚି । ଖାଲି କେଟ୍ଲି ଧରି ମୁହଁ ଲୁଚାଇ ଆସିଚି)

ରକ୍ତା ॥ ବାହାର ଦରଜାଟା ଦେଇଦେ । (ଯାଉ ଯାଉ) ମେଲ ଅଛି ! (ହରି ଚା' କେଟ୍ଲି ଟେବୁଲ ଉପରେ ରଖିଛି, କବାଟ ଦେଇଛି । ଆସି ଘର ଝାଡ଼ୁ କରୁ କରୁ)

ହରି ॥ ମୁଁ ଏତେ ଦହଗଞ୍ଜ ହୋଇ ପାରିବନି ଲୋ ମା' । ମୁଁ କଣ ତମର ଏମିତି ସେମିତି ଚାକର ହୋଇଚି କି ? ମୁଁ ମୋ ମା'ଙ୍କ ସାଙ୍ଗରେ ଆସିଥିଲି । (ଗୁଞ୍ଜୁରି ଫୋପାଡ଼ି ଠିଆ ହୋଇଚି) କୁଆଡ଼ୁ ରାତି ତିନିଟାକୁ ମଦ ପିଇକି ଆସିବେ ସକାଳ ଆଠଟା ବାଜିଲାଣି, ଚାହା ଟିକେ ପିଅ କହିଲେ ଆସି ମୋ ଉପରେ ଝଇତା ପଣିଆ ଦେଖାଇବେ । ମୁହଁ ଉପରକୁ ଚାହା ଫୋପାଡ଼ିବେ । ମୁଁ ଏ ଘରେ ରହି ପାରିବନି ଲୋ ମା' । ଯାଅ, ତମ ମାଇପ ପାଖକୁ ଯାଅ । (କାନ୍ଦି କାନ୍ଦି) ମା' ମୋର କ'ଣ ଥିଲେ । ଏ ମଦୁଆଟାର

ହାତ ଧରି କ'ଣ ନ ହେଲେଣି ମା' (ଘରି ଝାଡ଼ୁ କରିଚି) ଗାଁରୁ ଅଇଲା ବେଳେ ବୋଉ କହିଥିଲା—"ଦେଈର ପାଖେ ପାଖେ ଥିବୁ।" ହେଲେ ମୋ ଦେଈଟା ଲୁହ ନ କାଢ଼ି ରକତ କାନ୍ଦୁଚି,...ଏଇଟା ଗୋଟେ ଘର ନୁହେଁ ତ, ଚୁଡ଼ିଆଖାନା—ହେଇ ଦେଖୁନ...(ଫଟଫଟ୍ ଦେଖାଗଲା, ମେ· ବର୍ମା ଗୋଟିଏ କଣ୍ଢେଇ ପିସ୍ତଲ ଧରି ଲକ୍ଷ୍ୟ ସ୍ଥିର କରି ଆସୁଛନ୍ତି।)

ମେ. ବର୍ମା ॥ (ଚିତ୍କାର କରି) ଗୁଡୁମ୍।

ହରି ॥ ଏ ବୋଉ ଲୋ—ମାରି ପକେଇଲା। (କୁଦାମାରି ଭୂଇଁରେ ଲୁଚି ଯାଇଚି)

ମେ. ବର୍ମା ॥ ମାରିବ—I will kill—ମୁଁ ସେ ତପନ ବର୍ମାର ରକ୍ତ ନେବ—କାହିଁ—? କାହିଁ ସେ Rascal (ସିଡ଼ି ଉପରକୁ ଚଢ଼ି ଯାଉଥିଲା ବେଳେ ଗୋଟିଏ ଲମ୍ବା ଇଜେଲ ଉପରେ ଥିବା ଗୋଟିଏ ତୈଳ ଚିତ୍ରକୁ ଦେଖି) କିଏ? କିଏ? ସୁନନ୍ଦା...! ତମେ...ତମେ ସୁନନ୍ଦା...ହରିଆ! ଏଇଠି ଏ ତୈଳ ଚିତ୍ରଟା ଆସିଲା କୁଆଡ଼ୁ। ମୋ' ସୁନନ୍ଦା ଏଇଠିକି କେମିତି ଆସିଲା?

ହରି ॥ ସେ ପାଗଳ ବାବୁ ପରା ଏଇଠାକୁ ନେଇଚି—ସେଇ ବାଡ଼ପଡ଼ା ଆଣି ରଖିଥିବ।

ମେ. ବର୍ମା ॥ ଏଁ...ପାଗଳ? କିଏ? ମୁକ୍ତକାନ୍ତ, ମୁକ୍ତକାନ୍ତ ତାକୁ ଆଙ୍କିଚି? ମୁକ୍ତକାନ୍ତ ତାକୁ ଆଙ୍କିଚି? ସୁନନ୍ଦା...ତମର ପୁଅ ରାତି ତିନିଟାରେ ମଦ ପିଇ ବେଶ୍ୟା ଘରୁ ଫେରୁଚି। ସୁନନ୍ଦା...ତମର ବୋହୂ ଏ ଘରେ ଲୁହର ମାଳା ଜପି ଜପି ସନ୍ନ୍ୟାସିନୀ ହୋଇଗଲାଣି। ମୋତେ ଏ ଅବସ୍ଥା ଦେଖିବା ପାଇଁ ଏ ପର୍ଯ୍ୟନ୍ତ ବଞ୍ଚାଇ ରଖିଚ? ମୁଁ ମରିଯିବାକୁ ଚାହେଁ...ହଁ...ହଁ I want to die. I want to die.

॥ ପାଞ୍ଚ ॥

ନଚେତ୍...ମୋତେ Major ଗଗନ ବର୍ମାଙ୍କୁ...ଏମିତି ଗୋଟାଏ ପିସ୍ତଲ ଧରି ତା'ର ପୁଅ ତପନ ବର୍ମାଙ୍କୁ Shoot କରିବାକୁ ପଡ଼ିବ । Yes, (ସୋଫା ଉପରେ ବସି ପଡ଼ିଛନ୍ତି । ସ୍ୱୀ ଭିତରେ ପିଣ୍ଡି ତଳେ ହରି ଯାଇ ଲୁଚିଛି । ଏବଂ ଆସ୍ତେ ବାହାର ଉପରକୁ ଯାଉଚ) ହରିହରି ।

ହରି ॥ ଏ ବୋଉ ! ମାରି ପକେଇଲେ ଲୋ ।

ମେ. ବର୍ମା ॥ ଆସ—ପାଖକୁ ଆସ ।

ହରି ॥ ଏ ବୋଉ—ପାଖକୁ ଡ଼ାକୁଚନ୍ତି । ଗୁମାସ୍ତା ବାବୁ ?

(ଗଜେନ୍ଦ୍ର ଭିତରୁ ଆସୁଚନ୍ତି)

ଗଜେନ୍ଦ୍ର ॥ ଆରେ ହରି—କରେ ଏମିତି ବାଟ ମାଇଲୁ ଭଳି କ'ଣ ହେଉଚୁ । କ'ଣ ଫେଲେରିଆ ନା ମେଲେରିଆ...ଆଁ—ଏ ।

ହରି ॥ (ଚୁପ୍ ଚୁପ୍) ମୋତେ ପାଖକୁ ଡ଼ାକୁଚ ।

ଗଜେନ୍ଦ୍ର ॥ ଯାଉନୁ—ଆରେ ଯାଆ ନ । କିଛି କହିବେନି । ଛାଃ, ହ୍ୟାପ ମାହ୍ୟାଟାଏ । କରେ ? (ଚାଲିଗଲା ପରି)

ହରି ॥ କ'ଣ କହିଲ ? କ'ଣ କହିଲ ?

ଗଜେନ୍ଦ୍ର ॥ ଜ୍ୟୋତିଷ ଶାସ୍ତ୍ରରେ ଯାହାକୁ କହନ୍ତି—ପ୍ରାତଃ କାଳରୁ ମାଇଆ ଦର୍ଶନ, ଯାତ ଚନ୍ଦ୍ରଃ ଅସ୍ତି, ଖ୍ୟଣ ଅସ୍ତି । ଗୁଡ, ଗୁଡ଼, ବାଟଗୁଡ । ସିଆଡ଼େ ମୋ ନଳିଆର ଗୋବର୍ଦ୍ଧ ଚଢ଼େଇର ଦଶା କ'ଣ ଯେ ହେବଣି—ଜାଞ୍ଜାଳିକ ଲୋକ ତ । (ଚାଲିଗଲେ ବାହାରକୁ । ହରି ଡ଼ରି ଡ଼ରି ମିଃ ବର୍ମାଙ୍କ ସାମନାରେ ଠିଆ ହେଲା ।)

ମେ. ବର୍ମା ॥ ତା ହେଲେ ସେମାନେ ଶେଷରେ ଏ ଘରେ ମୁକ୍ତିକାନ୍ତକୁ ସ୍ଥାନ ଦେଲେ ?

ହରିଆ ॥ ପାଗଳା ବାବୁ ଆସିବାର ଆଠ, ଦଶ ଦିନ ହୋଇଥିବଣି, ନାହିଁ ବାବୁ ?

॥ ଛଅ ॥

ମେ. ବର୍ମା ॥ ସେମାନେ ତାକୁ ଠିକ୍ ସମୟରେ ଖାଇବା ପିଇବାକୁ ଦେଉଚନ୍ତି ତ ?

ହରି ॥ ଶିକ୍ଷା ଦେଇ ପଢ଼ା ତାଙ୍କ କଥା ବୁଝୁଚନ୍ତି । ମା' ତ ନୂଆ ନୂଆ କେତେ କ'ଣ ରାନ୍ଧ ଖୁଆଉଚନ୍ତି ତାଙ୍କୁ । ବଡ଼ ନମାୟା ବାବୁଟିଏ । ମଲ ମାଛିକି ମ' ବୋଲି କହିବେନି, ନୁହେଁ ?

ମେ. ବର୍ମା ॥ ହରିହରି । ମୁକ୍ତିକାନ୍ତର ଚରିତ୍ର ଚିତ୍ରଣ କରିବାକୁ ମୁଁ ତୁମକୁ ପଚାରି ନଥିଲି । ଏମାନେ ଯଦି ତାକୁ ଚିହ୍ନିଥାନ୍ତେ, ଜୀବନ ଭିତରେ ଏତେ ଜଟିଳତା ଆସନ୍ତା କୁଆଡ଼ୁ ?

(ହଠାତ୍ ବାହାରୁ Calling Bell ବାଜିଲା ଓ ହରିଆ ଚମକି ଗ୍ଲାସ୍ଟିରେ ଛେପ ପକେଇଲା)

ହରିଆ ॥ ପୁଣି ଗୋଟାଏ କିଏ ଡାକିଲାଣି !

ମେ. ବର୍ମା ॥ ଯାଅ ଅତିଥି ସତ୍କାର କର ।

(ହରିଆ କବାଟ ଖୋଲିଚି, ପ୍ରବେଶ କଲେ ଶ୍ରୀକାନ୍ତ)

ଶ୍ରୀକାନ୍ତ ॥ ମଉସା, ନମସ୍କାର ।

ମେ. ବର୍ମା ॥ (ଖୁବ୍ ଜୋରରେ ହସି ଉଠିଲେ) ଅତିଥି !! ତମେ ଏ ଅତିଥି ହେବନି ତ ଆଉ କିଏ ହେବ ଶ୍ରୀକାନ୍ତ ? ତମେ B. A. ରେ ଆମ ଶିକ୍ଷା ସାଙ୍ଗରେ ପଢ଼ୁଥିଲ ନା ? ତପନ ତମର ବଡଭାଇ ଭଳି । ତମ ଆଖି ଏମିତି ନାଲ୍ ଦିଶୁଛି କାହିଁକି ?

ଶ୍ରୀକାନ୍ତ ॥ ନା···ମାନେ···କଥା କଣ କି ମଉସା କାଲି ରାତିରେ···

ମେ. ବର୍ମା ॥ ଟିକିଏ ବେଶି Drink କରି ଦେଇଥିଲ ?

ଶ୍ରୀକାନ୍ତ ॥ ନା...ମାନେ ରାତିରେ ଟିକିଏ ଭଲ ନିଦ ହୋଇ ନଥିଲା ।

ମେ. ବର୍ମା ॥ ରାତିରେ ନିଦ ହେଉନି ? ରାତି ଗୁଡାକ ସବୁ ନାଇଟ୍ ମେୟାର ହେଇଯାଉଛି । ଖାଲି ଦୁଃସ୍ୱପ୍ନ ଖାଲି Mental torture......

॥ ସାତ ॥

ଶ୍ରୀକାନ୍ତ ॥ ଆପଣ ଅସୁସ୍ଥ ଅଛନ୍ତି ମଉସା, ବସନ୍ତୁ ।

ମେ. ବର୍ମା ॥ ଆଃ ସତ କହିବାରେ ଯେ କି ଅସ୍ୱସ୍ତି ! ଓଃ ସତ କହିବାରେ ଯେ କି ଯନ୍ତ୍ରଣା !

ଶ୍ରୀକାନ୍ତ ॥ ଅନେକ ଦିନ ହେଲା ନିଦ ହେଉନି ।

ମେ. ବର୍ମା ॥ Pluck out your eyelids. ତା ପରେ ତମେ ଆଉ ଶୋଇ ପାରିବନି ଜୀବନ ସାରା ।

ଶ୍ରୀକାନ୍ତ ॥ ଆପଣ ବସନ୍ତୁ ମଉସା (ବସାଇ ଦେଇଛି)

ମେ. ବର୍ମା ॥ ମୁଁ ଜାଣେ ତମେମାନେ ମୋତେ ବୁଢ଼ା ବୋଲି ଏମିତି ବସାଇ ଦେବ । I belong to the old generation (ହସିଛନ୍ତି) ହଁ ମୁଁ ବୁଢ଼ା ହୋଇଯାଇଛି । ଯୌବନ ମୋ ପାଇଁ ଖାଲି ଏକ ସ୍ମୃତି । ବରଂ ତମେ ବସ ମୁଁ ଯାଉଛି । (ମେ. ବର୍ମା ଚାଲିଗଲେ ବଗିଚା ପଟରୁ ପ୍ରବେଶ କଲେ ଶିଖା)

ଶ୍ରୀକାନ୍ତ ॥ Good Morning.

ଶିଖା ॥ Good Morning, ଓଃ ତୁମେ !

ଶ୍ରୀକାନ୍ତ ॥ କଣ ସକାଳୁ ସକାଳୁ ଜଣେ ଦୁର୍ଜନର ମୁହଁ ଦେଖିଲି ବୋଲି ମନେ ମନେ ଅଭିଶାପ ଦେଉଛ ?

ଶିଖା ॥ ହଁ ସେମିତି ଭାବିଲେ କ୍ଷତି କଣ ? ତମେ ଜଣେ ଭଲ ପିଲା ବୋଲି ସାର୍ଟିଫିକେଟ୍ ଦେଖାଇ ପାରିବ ।

ଶ୍ରୀକାନ୍ତ ॥ ଜଣେ Classmate ହିସାବରେ ତ ଦେଖି ଆସିଛ ? ମୁଁ ତ Principal ପାଖକୁ ଧରା ହୋଇ ଯାଉ ନଥିଲି ?

ଶିଖା ॥ କଣ ଏଣୁ ତେଣୁ ଗୁଡ଼ାଏ ବାଜେ ଗପୁଚ ।

ଶ୍ରୀକାନ୍ତ ॥ ମୁଁ ଜାଣେ ମୁଁ ଯାହା କହିବ ତମକୁ ବାଜେ ଲାଗିବ ।

ଶିଖା ॥ ଏ ପର୍ଯ୍ୟନ୍ତ ତୁମର କାଲି ରାତିର hang over ଯାଇନି ବୋଧହୁଏ (କଥା ବୁଲାଇ)
ହଁ, କୁଆଡ଼େ ? ବାପାଙ୍କ ପାଖକୁ ଆସିଲ ?

ଶ୍ରୀକାନ୍ତ ॥ ସାର୍ ଉଠିଲେଣି ?

ଶିଖା ॥ ନ'ଟା ବାଜିଲଣିକି ? ଡ଼ାକିଦେବ ?

ଶ୍ରୀକାନ୍ତ ॥ ନା ଡାକବ କାହିଁକି ? ମୁଁ ବସିଛୁ ଏଇଠି । ସାର୍ ବୋଧେ-ହୁଏ ଏବ୍ଭଷଣି ଆସିବେ ।

ଶିଖା ॥ ବସ, ମୋର ଆପତ୍ତି ନାହିଁ । ମତେ କିନ୍ତୁ କମ୍ପାନି ଦେବା ପାଇଁ କହିବନି ।

ଶ୍ରୀକାନ୍ତ ॥ କାହିଁକି ମୋ କମ୍ପାନିଟା କ'ଣ ଖରାପ ଲାଗୁଚ ।

ଶିଖା ॥ ନା···ମାନେ ତମ ହାତ ଦୁଇଟା ଯେମିତି ଅଭଦ୍ର (ହଠାତ୍) ଆଉ ଯଦି ସତରେ ତମ ପାଖରେ ବସିବାକୁ ଖରାପ ଲାଗୁଛି ବୋଲି କହେ ।

ଶ୍ରୀକାନ୍ତ ॥ (ଅଭିମାନରେ) ହଁ, ହଁ ତୁମର ତ ଫର୍ଣ୍ଣବ ଆଉ ଅଶୋକ ଅଛନ୍ତି । ଭଲ ପିଲା, ସୁଜନ ଆମେ କାହିଁକି ଖରାପ ଲାଗିବୁନି ?

ଶିଖା ॥ ସେମାନଙ୍କ ସଙ୍ଗରେ ମିଳାମିଶା କରେ ବୋଲି ତୁମର ଖୁବ୍ ଈର୍ଷା ନାଇଁ ଶ୍ରୀକାନ୍ତ ?

ଶ୍ରୀକାନ୍ତ ॥ ମୁଁ ଜାଣେ ସେମାନେ ଗୋଟିଏ ଗୋଟିଏ ନଗଣ୍ୟ ପ୍ରାଣୀ creatures ଗୋଟିଏ ଗୋଟିଏ ଗୁମ୍ଫାରେ ହ୍ୱରେଗିର ବନ୍ଦ୍ ହୋଇଯିବ ।

ଶିଖା ॥ ସବୁ ପୁଅ stupid, କଏ କୋଉ ଭାବରେ ।

ଶ୍ରୀକାନ୍ତ ॥ କଣ ମନେ ମନେ ନିଜକୁ ଭାରି forward ଭାବୁଛ କହୋ ?

ଶିଖା ॥ ଆମେ forward ଥିଲୁ ଏବଂ ଅଛୁ । ଆମର ଖାନ୍ଦାନ୍ forward.

ଶ୍ରୀକାନ୍ତ ॥ ଆମ ଖାନ୍ଦାନଟା କଣ ଖରାପ ଲାଗିଲା କି ?

ଶିଖା ॥ ଖରାପ ଲାଗିବ କାହିଁକି ? ତମେ ମିଲ୍‌ପ୍ରୋପ୍ରାଇଟର୍ ସହରର Business magnet ଇଚ୍ଛା କଲେ ତମେ ଆଉ ଦ'ଟା ଗାଡ଼ି କିଣିପାରିବ ?

ଶ୍ରୀକାନ୍ତ ॥ ନଷ୍ଟସ୍ପ ଯନ୍ତ ତମେ କଣି ଦେବା ପାଇଁ କହିବ ।

ଶିଖା ॥ (ଥଟ୍ଟାରେ) କଣ ? କଣିଦେବ ?

ଶ୍ରୀକାନ୍ତ ॥ ପରୀକ୍ଷା କରି ଦେଖ ଥରେ······

ଶିଖା ॥ ତେଣେ ଭିତରେ ଭିତରେ ଗ୍ଲାଣ୍ଡ ଫାଟି ଯିବଣି ?

ଶ୍ରୀକାନ୍ତ ॥ ମୋଟେ ନୁହଁ ଏଇଟା ମୁର୍ଗୀ ଦିଲ୍ ନୁହେଁ ?

ଶିଖା ॥ Nervous ହୋଇ ଯିବଣି ମ ? ତିରିଶ୍ ହଜାର ଟଙ୍କା ଗୋଟେ କମ୍ କଥା ନୁହେଁ ତମ ଭଳି କଣ୍ଟ୍ରାକ୍ଟରମାନଙ୍କ ପାଖରେ ।

ଶ୍ରୀକାନ୍ତ ॥ Who care for money ଶିଖା ? ବାପାଙ୍କର ଯେତକ ଅଛି ସେଇଥିରେ ମୁଁ ମୋ ଜୀବନଟାକୁ ଅନ୍ତତଃ ବେଶ୍ ମଉଜରେ ଉଡ଼େଇ ଦେଇପାରିବ । I spend thousands ······ଯେମିତି ପଇସା ଆସୁଛି ସେମିତି ପଇସା ଯାଉଛି ।

ଶିଖା ॥ ଶ୍ରୀକାନ୍ତ—ତମଙ୍କୁ ଦେଖିଲେ ଦୟା ଆସେ ।

ଶ୍ରୀକାନ୍ତ ॥ ଡ଼େସ୍‌ଡ଼ମୋନା ଅଥେଲୋକୁ ଦୟା କରୁଥିଲା । ଦୟା କୁଆଡ଼େ ପ୍ରେମ ଉଦ୍ରେକ କରାଏ ।

ଶିଖା ॥ ଆଃ, କି ଦୟନୀୟ ଅବସ୍ଥା ।

ଶ୍ରୀକାନ୍ତ ॥ ଓଃ ! ତମେ ଟିକଏ ସିରିଅସ୍ ହେବା ଉଚିତ୍ ଶିଖା ଅନ୍ତତଃ ମୋ ସଙ୍ଗରେ କଥାବାର୍ତ୍ତା କଲାବେଳେ······

ଶିଖା ॥ ପାର୍ଟି, ପିକ୍‌ନିକ୍‌ରେ ବୁଲେ । ଯେତେବେଳେ ଯୋଉଠି ପାରିଲା ଖାଲି ପୁଅଙ୍କ ସାଙ୍ଗରେ ଆଡ୍‌ଡା ମାରେ ବୋଲି ତମମାନଙ୍କର ଗୋଟିଏ ବାଜେ ଆଇଡିଆ ରହିଯାଇଛି ମୋ ଉପରେ, ନାଇଁ ?

ଶ୍ରୀକାନ୍ତ ॥ ନା, ଅନ୍ତତଃ ମୋ ମନରେ ନାଇଁ, This is all silly· ବାହାରେ ଝିଅମାନେ କୋଉ ସ୍ତରକୁ ଚଲେଣି ଅଥଚ ଆମର ଓଡ଼ିଆ ଝିଅମାନେ······

ଶିଖା ॥ ଆଉ ହେବ କଣ ? ମେକ୍ସି ଖଣ୍ଡେ ପିନ୍ଧି ବାହାର ପଡ଼ିଲେ ତମ ଟୋକାଙ୍କ ଆଖିରୁ ନିଦ ଉଡ଼ିଯାଉଛି ।

ଶ୍ରୀକାନ୍ତ ॥ ସେଗୁଡ଼ାକ ତମ ସଞ୍ଜୟ ଓ ଅଶୋକଙ୍କୁ ଶୁଣାଇବ ଯାଅ ଆମେ ସେମିତି ଲୁଙ୍ଗୁଡ଼ା ନୋହୁଁ ।

ଶିଖା ॥ ତମେଟି ?

ଶ୍ରୀକାନ୍ତ ॥ କ'ଣ ? କେବେ ସେମିତି ଦେଖିଛ ?

ଶିଖା ॥ ଛାଡ଼ Don't be a child my dear. ଗ୍ରେଟ୍ କୁନି କୁନି ଝିଅଙ୍କୁ ଗେଲ କରିହୁଏ । (କିନ୍ତୁ) ପ୍ରେମ ନୁହେଁ ।

ଶ୍ରୀକାନ୍ତ ॥ ମୋତେ ତା ହେଲେ ତୁମେ ଟ୍ରେଟ୍ ଝିଅ ତାଲିକାରେ ରଖି ଦେଇଛ ନାହିଁ ?

ଶିଖା ॥ Yes you are still a child, ଚା ପିଇବ ?

ଶ୍ରୀକାନ୍ତ ॥ No, Thanks.

ଶିଖା ॥ କଣ ସକାଳୁ ସକାଳୁ ପିଇ ଦେଇଚ ? ହଉ ବସ ମୁଁ ଚା ନେଇ ଆସୁଛି । କିଛି Snacks ?
(ଶିଖା ଚାଲିଗଲା ପରେ ତପନ ବର୍ମା ଓହ୍ଲାଇ ଆସିଲେ, ମୁହଁରେ ଚୁରୁଟ୍, ଡ୍ରେସିଂଗାଉନ୍ ସୁଟ୍ ଶ୍ରୀକାନ୍ତଙ୍କୁ ଦେଖି ଅଭିବାଦନ ଜଣେଇଲେ)

ତପନ ॥ ହାଲୋ ଶ୍ରୀକାନ୍ତ !

ଶ୍ରୀକାନ୍ତ ॥ Good morning Sir.

ତପନ ॥ Good morning ! How are you ?

ଶ୍ରୀକାନ୍ତ ॥ Ok, Sir.

ତପନ ॥ କାଲି...ମାନେ...ଯାହା କୁହ—ଠିକଏ...

ଶ୍ରୀକାନ୍ତ ॥ ଇଏ କିଛି ନୁହେଁ ସାର୍ । କଣ୍ଟସଟା ଆଦୌ Harmful ନୁହେଁ । ଇଂପୋର୍ଟେଡ୍ ଘର ଦାମିକା...ମୋର ଜଣେ ସାଙ୍ଗର ଭଉଣୋଇ କାଲିଫର୍ଣ୍ଣିଆରେ ରହନ୍ତି । ସିଏ ଆଣିଥିଲେ ।

॥ ଏଗାର ॥

Source: Author, Digitized by PPRACHIN, SOA

ତପନ ॥ I could not resist ବାଧ୍ୟ ହୋଇ ଗୁଳି ଆସିଲା ।

ଶ୍ରୀକାନ୍ତ ॥ ତା ପରେ, କିନ୍ତୁ ସାର୍ ଭାରି ମଜା ହେଲା । ଆସ୍ତେ ପଟ୍ଟନାୟକ ସେଇଠି ବୋଧହୁଏ ଶୋଇପଡ଼ିଲା । କାରଣ ଲାଇଟସ ଅଫ୍ ହେବା ପୂର୍ବରୁ ମୁଁ ଦେଖୁଛି, ସୋଫା ଉପରେ ସେମିତି ଅବିନ୍ୟସ୍ତ ହୋଇ......

ତପନ ॥ I see !

ଶ୍ରୀକାନ୍ତ ॥ ଆପଣଙ୍କ ସାଙ୍ଗରେ ଟିକିଏ ଗପିବା ପାଇଁ ତାର ଯୋଉ ବିକଳ ଅବସ୍ଥା !

ତପନ ॥ ତମେ କେମିତି ଜାଣିଲ ?

ଶ୍ରୀକାନ୍ତ ॥ ମଚ୍ଛଲିଟା ସାର୍ ଖୁବ୍ ଗଭୀର ପାଣିରେ ଅଛି ।

ତପନ ॥ Easy task ନୁହେଁ ।

ଶ୍ରୀକାନ୍ତ ॥ ଆଦୌ ନୁହେ ସାର୍ । ଆପଣଙ୍କ ପାଇଁ ଅବଶ୍ୟ......

ତପନ ॥ ମୋ ପାଇଁ ?

ଶ୍ରୀକାନ୍ତ ॥ ସେ ରେକର୍ଡଟା ଉପରେ ଆପଣଙ୍କର ଯେଉଁ stepping ...ଆଉ ଆସ୍ତେ ଯାହା ନାଚେ—ସେଥିରେ !

ତପନ ॥ କ'ଣ ପଚାରୁଥିଲା କି ତୁମକୁ ?

ଶ୍ରୀକାନ୍ତ ॥ ଆପଣଙ୍କ ନାଁଟା ପଚାରିଲା ।

ତପନ ତମେ କ'ଣ କହିଲ ? ଠିକ୍ ନା ହାଓ୍ୱା ?

ଶ୍ରୀକାନ୍ତ ॥ କହିଦେଇ ଗଲି ଆଜ୍ଞା······ତପନ ବର୍ମା, ଏକ୍‌ଜିକ୍ୟୁଟିଭ୍ ଇଂଜିନିୟର, ମଳୟ ନିବାସ, ଶାରଦା ଦେବୀ ରୋଡ଼, ପୁରୀ ।

ତପନ ॥ ସେଇଠୁ ?

ଶ୍ରୀକାନ୍ତ ॥ ମୁଁ ଠିକ୍ ତାକୁ study କରୁଛି, ଏତିକି ଶୁଣିଲା ବେଳକୁ ତାର ଆଖିପତା ଦୁଇଟି ନଇଁଗଲା, ଓଠ ଦୁଇଟା ଥରି ଉଠିଲା । ଦେହରେ କେମିତି ଗୋଟାଏ ଶିହରଣ ଖେଳିଗଲା । ଆପଣ ବିଶ୍ୱାସ କରନ୍ତୁ ସାର୍ ।

ତପନ ॥ (ଅନ୍ୟମନସ୍କ) ଏଁ, ହୁଁ । ଶ୍ୟାମଳୀ ହେଲେ ବ ଝିଅଟାର ଗଠନ ବଢ଼ି ସ୍କିନ୍ ।

ଶ୍ରୀକାନ୍ତ ॥ ଆଜ୍ଞା ଖୁବ୍ ସୁନ୍ଦର ଗାଏ ସାର୍ ।

ତପନ ॥ ଯାଃ, ତୁମେ ମୋତେ ତା ସାଙ୍ଗରେ ଟିକଏ Introduce କରାଇ ଦେଲନି ।

ଶ୍ରୀକାନ୍ତ ॥ କାଲି ଆପଣଙ୍କ ସାଙ୍ଗରେ ଟିକଏ ନିରୋଳାରେ କଥାବାର୍ତ୍ତା ହେବ ବୋଲି ଭାବୁଥିଲା । ଆପଣ ତାକୁ ଆଦୌ ଚାନ୍ସ ଦେଲେନି ସାର୍ ।

ତପନ ॥ (ତପନ ଡ୍ରୟର୍ ଖୋଲି ଫାଇଲ୍ ବାହାର କଲା) ନା, ମାନେ··· କାଲି·····

ଶ୍ରୀକାନ୍ତ ॥ ସେଥିପା ତ ସାର୍, ଟିକଏ ଓଭର୍ ହୋଇଗଲେ ସବୁ ଗୋଳମାଳ, ସେ କିନ୍ତୁ ଆପଣଙ୍କର ଚେହେରାଟାକୁ କିନ୍ତୁ ମନେ ରଖିଛି ।

ତପନ ॥ ତୁମକୁ କିଛି କହୁଥିଲା ?

ଶ୍ରୀକାନ୍ତ ॥ ହୁଁ, ଭାରି ରୋବାଷ୍ଟ୍, ଭାରି ମାସ୍କୁଲାଇନ୍, ସ୍ପୋର୍ଟସ୍ମ୍ୟାନ୍ ଥିଲେ କି ?

ତପନ ॥ ଆଚ୍ଛା ଝିଅଟା ସାଙ୍ଗରେ ପୁଣି କେବେ ଦେଖା ହେବ କହିଲ ?

ଶ୍ରୀକାନ୍ତ । ଆଜି ସନ୍ଧ୍ୟାରେ···ଆପଣ ଆଜି ସନ୍ଧ୍ୟାରେ କ୍ଲବ୍କୁ ଆସୁଛନ୍ତି ତ ?

ତପନ ॥ ଆଜି ସନ୍ଧ୍ୟାରେ...ନା ଆଜି କିଛି Engagement ନାହିଁ ।

ଶ୍ରୀକାନ୍ତ ॥ ତା ହେଲେ ସାର୍ ମୁଁ ଆପଣଙ୍କୁ କ୍ଲବ୍‌ରେ ଅପେକ୍ଷା କରିବ ନା ଜିପ୍ ନେଇ ଆସିବି ?

ତପନ ॥ ବେଶ୍ ଭଲ ହୁଅନ୍ତା । ମୁଁ ଟୁର୍‌ରୁ ଫେରୁ ଫେରୁ ଛ'ଟା ବାଜିଯିବ । ଆସି Bathଟା ସାରି...ଠିକ୍ ଆଠଟା ବେଳେ ପହଞ୍ଚିଯିବ ତମେ ?

॥ ତେର ॥

ଶ୍ରୀକାନ୍ତ ॥ ଠିକ୍ ଅଛି ସାର୍, ଠିକ୍ ଅଛି । (Pause) ଆପଣ ଆଜ
କୋଉଠିକି Tourରେ ଯିବେ ସାର୍ ?

ତପନ ॥ ସେଇ ଯୋଉ କେତେ ଗୁଡ଼େ ଷ୍ଟାଫ୍ କ୍ୱାର୍ଟରସ୍ ତିଆରି
ହେଉଛି ।

ଶ୍ରୀକାନ୍ତ ॥ ଓଃ Contractor ଗୁପ୍ତାଜୀଙ୍କର ସେଇ ପୁରୁଣା
ଟେଣ୍ଡେର୍‌ଟା ??

ତପନ ॥ ହଁ, Construction ସରିଗଲାଣି । ଆଚ୍ଛା ଶ୍ରୀକାନ୍ତ—ତୁମର
ସେ Bridge କାମଟା ?

ଶ୍ରୀକାନ୍ତ ॥ କୋଉ ବ୍ରିଜ୍ ସାର୍ ? ହାତରେ ତ ବର୍ତ୍ତମାନ ତିନଟା
ବ୍ରିଜ୍‌ର କାମ (Pause) ଓଃ ଆପଣ ସେଇ ଶ୍ରୀରାମପୁର
ବ୍ରିଜ୍ କଥା କହୁଛନ୍ତି ବୋଧହୁଏ ?

ତପନ ॥ ହଁ, ତୁମର ପରା ସେଇଟା ଏଇ ମାସରେ ସାରିବାର
କଥା ।

ଶ୍ରୀକାନ୍ତ ॥ କାମଟା ପ୍ରାୟ ସରିଯାଇଛି ସାର୍, ଆପଣ ତ ସାର୍ ଆମ
ଆଡ଼େ ଆସୁନାହାନ୍ତି ।

ତପନ ॥ ଶୁଣିଲି କୁଆଡ଼େ ଖରାପ ବାଜେ କାମ କରିଛ । କ'ଣ
ବଦ୍‌ନାମ କରେଇବକି ଏ ?

ଶ୍ରୀକାନ୍ତ ॥ ନାହିଁ ସାର୍, ଆପଣ Inspect କରି ଦେଖନ୍ତୁ ।

ତପନ ॥ ଯଦି ଖରାପ ଥାଏ ?

ଶ୍ରୀକାନ୍ତ ॥ ଆପଣ ତ ଜାଣିଛନ୍ତି ସାର୍, ସାର୍ ସେ ବିଲ୍‌ଟା ଟିକେ
ପାଶ୍ କରେଇ ଦେଇଥିଲେ······

ତପନ ॥ କିନ୍ତୁ ତୁମର ଯେ କାମ ବାକି ଅଛି !

ଶ୍ରୀକାନ୍ତ ॥ ମୁଁ ବି ଗୃହୁଁନି, ସାର୍ ଆପଣ ମୋ ଲାଗି ଅସୁବିଧାରେ
ପଡ଼ନ୍ତୁ । କାରଣ, ଏଜମାନାଟା ଭଲ ନୁହେଁ । ତଥାପି
ଏଇ ବିଲ୍‌ଟା Release କରେଇ ଦେଲେ······

ତପନ ॥ ତମେ ଏସବୁ Official କାମରେ ମତେ ବଡ ଅଡୁଆରେ ପକଉଚ ଶ୍ରୀକାନ୍ତ ।

ଶ୍ରୀକାନ୍ତ ॥ ତାହା ହେଲେ ଆଉ ସାର୍...ଅସୁବିଧା ଯଦି ହେବ...

ତପନ ॥ କେତେ ଟଙ୍କାର Bill ସେଇଟା ?

ଶ୍ରୀକାନ୍ତ ॥ Two lakhs fifty thousands.

ତପନ : କିନ୍ତୁ କାମଟା Inspection ନ ହେଉଣୁ...

ଶ୍ରୀକାନ୍ତ ॥ କିଛି ନାହିଁ ସାର୍...ଖାଲି Billଟା ପାଶ୍ କରେଇ ଦେଲେ ଆଜିର ପାର୍ଟିରେ ଟିକିଏ ବ୍ରେନକ୍ ଆସିଯାଆନ୍ତା...

ତପନ ॥ ଠିକ୍ ଅଛି । ତୁମେ ଯାଅ ଶ୍ରୀକାନ୍ତ । ମୁଁ ତାର ବ୍ୟବସ୍ଥା କରୁଛି ।

ଶ୍ରୀକାନ୍ତ ॥ Thank you sir (ଶ୍ରୀକାନ୍ତ ଯିବାକୁ ଉଠିଲା ବେଳେ ଶିଖା ଚ୍ଚ ଆଉ Snacks ନେଇ ଆସିଛି)

ଶିଖା ॥ ଅରେ, ଶ୍ରୀକାନ୍ତ, ତମେ ଚାଲିଯାଉଛ ଯେ ?

ତପନ ॥ ବସ, ଚ୍ଚ'ଟା ପିଇଦେଇ ଯିବ । (ଶ୍ରୀକାନ୍ତ ବସିଛି, ଶିଖା ଚ୍ଚ' ଥୋଇ ଦେଇଯାଇଛି)

ଶ୍ରୀକାନ୍ତ ॥ ତମେ ବସିବନି ଶିଖା ?

ଶିଖା ॥ ତମେ ଜାଣ—ମୁଁ ଚ୍ଚ' ପିଏନି ।

ଶ୍ରୀକାନ୍ତ ॥ ଖାଲି ପାଖରେ ବସିବ ।

ଶିଖା ॥ ଆଜକାଲି ଦେଖୁଛି ତମର ଖାଲି Company ଦରକାର ପଡୁଚି ଶ୍ରୀକାନ୍ତ । ବିଶେଷ କରି Ladies company ଗୋଟାଏ Private secretary ରଖୁନା ?

ଶ୍ରୀକାନ୍ତ ॥ ଓଃ...Really, I am in need of one ! ତମର କେଉ ବାନ୍ଧବୀ ଯଦି !

ଶିଖା ॥ ଯା ହଉ, ବଞ୍ଚେଇ ଦେଲେ ! ମତେ ଯାହା କହୁନ...

॥ ପନ୍ଦର ॥

ତପନ ॥ ତମ ବହିଙ୍କର ଆଜ କେବେ ଭଲ ପଡ଼ିବ ?

ଶିଖା ॥ କେବେ ନୁହେଁ ।

ଶ୍ରୀକାନ୍ତ ॥ I am a bad chap ଶିଖା ଆଗରେ ମୁଁ ଗୋଟାଏ ବଜାଖି ଗୁଣ୍ଡା ଧରଣର ।

ଶିଖା ॥ ଠିକ୍ ତ (ଗୁଲିଗଲା) ।

ତପନ ॥ ଛୁ ଶିଖା !

ଶ୍ରୀକାନ୍ତ ॥ ଅନେକ ଦିନ ହେଲା ଆମେ ଶିକାରକୁ ଯାଇନେ ।

ତପନ ॥ ଏଇଟା ଗୋଟାଏ Busy season ପଡଯାଇଛି ।

ଶ୍ରୀକାନ୍ତ ॥ ମିଃ ଦାସ, ଆଉ ମିଃ ମହାନ୍ତି କହୁଥିଲେ, ଯଦି ସୁବିଧା ହେବ, ଏଇ ସଟରଡ଼େ଼ଟା ।

ତପନ ॥ କେଉଁଠିକି ? ଚନ୍ଦକା ଜଙ୍ଗଲ ?

ଶ୍ରୀକାନ୍ତ ॥ ଯେ କୌଣସି ଗୋଟାଏ ଜଙ୍ଗଲ...ଯା କିଛି ମିଳିଲା... ମାନେ Hunting for hunting sake...ସେମିତି କିଛି ନିର୍ଦ୍ଦିଷ୍ଟ ନାହିଁ...ଗୁଳିକୁ ଗୋଟାଏ ରାଉଣ୍ଡ କଟାଇ ଆସିବା ।

ତପନ ॥ ଦେଖିବା, ସଟରଡ଼େ଼ଟା ଆସୁ ।

ଶ୍ରୀକାନ୍ତ ॥ ମୁଁ ତାହା ହେଲେ ଆସୁଛି ସାର୍ ।

ତପନ ॥ O Kay ! (ଶ୍ରୀକାନ୍ତ ଯିବା ପରେ ଫାଇଲ୍‌ରେ ମନ ଦେଲେ । ଶିଖା ଆସି ପହଞ୍ଚିଲା)

ଶିଖା ॥ ଭାଇ, ଭାଇମ !

ତପନ ॥ କଣ ?

ଶିଖା ॥ ମୋର Tape recorder ଆସିଲା ?

ତପନ ॥ ଆରେ, ତୁ ପାଗଳୀ ହେଲୁନା କଣ ? Tape recorder ଟାଏ କ'ଣ ହେବ କିହନ୍ତୁ ? ଘରେ ତ ଗୋଟାଏ ଅଛି ।

ଶିଖା ॥ ଡଃ ! ସେଇଟା ତ ତମର...ଭାଉଜଙ୍କର ।

ତପନ ॥ ସେଇଟା କଏ ? ଭଉଜ ଏ ଘରେ କଏ ?

ଶିଖା ॥ ଭଉଜ ? ଭଉଜ ! କ'ଣ ଯେ ତୁମେ କୁହ ଭାଇ !

ତପନ ॥ ମୋ ଆଗରେ ଆଉ କେବେ ସେ ଭଉଜର ନାଁ । ଧରିବୁନି···
That bloody.

ଶିଖା ॥ ସେ ଯା ହଉ ସେଇଟା ତ Bed roomରେ ଅଛି···
four track ର ଏତେ ବଡଟାଏ···ମୋ ପାଇଁ ଗୋଟେ
Portable ହେଲେ ଚଳିବ ।

ତପନ ॥ (ଫାଇଲ୍ ଦେଖୁଦେଖୁ) ଯୋଉ ଗୀତ ଶୁଣିବା କଥା, ସେଇଥିରେ
ଶୁଣିଲେ ଚଳିବନି ?

ଶିଖା ॥ ନା ଭଉଜଙ୍କର ସେଇଟା... ସେଇଥିରେ କେମିତି ଶୁଣିବ ଯେ ?

ତପନ ॥ ଓଃ ! କହିଲି ନା, Out and out she is a house-wife !

ଶିଖା ॥ ସେଇଥିରୁ ମୋତେ କ'ଣ ମିଳିବ ଯେ ? That's your
private affairs. କିନ୍ତୁ ଭାଇ ମୁଁ କହିଦଉଚି, ମୋ
Tape recorder ନ ହେଲେ କଲେଜ ଯିବା ବନ୍ଦ ।

ତପନ ॥ (ଫାଇଲ୍‌ରେ ମନ ଦେଇ ପରି ଅଭିନୟ)

ଶିଖା ॥ କ'ଣ ଶୁଣୁଚ ? (କଲମ ଛଡେଇ ନେଇଚି)

ତପନ ॥ ଓଃ ! Don't be silly Sikha, ଦିନକୁ ଦିନ ତୁ ବେଶି ଛୁଆ
ହୋଇଯାଉଛୁ । ଆସି M. A. ପଢିଲୁଣି, ଅଥଚ···ଦେଲୁ···
ମୋ କଲମଟା ଦେଲୁ ।

ଶିଖା ॥ ତମେ ଆଗେ କୁହ ମୋ recorder କେବେ ଆସିବ ?

ତପନ ॥ ଦେଖ, ତୁ ଯଦି ଏମିତି ଜିଦ୍ ଧରିବୁନା···· ତା ହେଲେ ମୁଁ
ଗୃହିଣୀ । ଗୋଟିଏ ପାତ୍ର ଦେଖି···କରାଣୀଟାଏ ନହେଲେ ବେଶି
ହୋଇ ଗୋଟେ କଲେଜ ମାଷ୍ଟର······

ଶିଖା ॥ ପୁଣି ଚଡେଇଲ ? (କଲମ ଫୋପାଡ଼ି ଦେଲା)

॥ ସତର ॥

ତପନ ॥ ଆଃ, ବଗୁଗ୍ କଲମଟା ତୋର କ'ଣ ଦୋଷ କଲା···ଯାହା କହିବା କଥା ମୋତେ କହୁନୁ...

ଶିଖା ॥ ହେଇ, ସେ ବାଜେ କଥା କହି ଭୁଲେଇ ଦେଲେ ଚଳିବନି ଯେ—ଆଜ ସନ୍ଧ୍ୟା ସୁଦ୍ଧା ଯଦି ନ ଆଣ···

ତପନ ॥ ଆଚ୍ଛା, ତୁ ଯା, ସନ୍ଧ୍ୟା ସୁଦ୍ଧା ତୋ ଜିନିଷ ତୁ ପାଇଯିବୁ । ଅବଶ୍ୟ ଯଦି କୌଣସି ବିଶେଷ କାମରେ ମୁଁ ନଯାଏ ।

ଶିଖା ॥ ତା ହେଲେ ତ ତମେ ଆଣିଲା ପରି ଜଣାଗଲାଣି । ତମେ ଯେମିତି ଭୁଲା ଲୋକ ନା...ଆଜ Party—କାଲି ଶିକାର ତା ପରଦିନ ଅଫିସ୍ କାମ, ତା ପରଦିନ ଭୁଲିଗଲ—ଏମିତି କହି କହି ଦ' ମାସ ହେଇଗଲାଣି ।

ତପନ ॥ ନା ଆଜ ଆଉ ଭୁଲିବାର ନୁହେଁ, ନିଶ୍ଚୟ ଆସିବ ।

ଶିଖା ॥ ନିଶ୍ଚୟ ?

ତପନ ॥ ଏଇତ ଶ୍ରୀକାନ୍ତଟା ଗୁଲିଗଲା...କହି ଦେଇଥିଲେ...ଆଚ୍ଛା ଠିକ୍ ଅଛି । ତୁ ଯା—(କାମରେ ମନ ଦେଇ)

ଶିଖା ॥ (ପିଲାଳିଆ ଭଙ୍ଗୀରେ) ଭାଇ !

ତପନ ॥ ପୁଣି କ'ଣ ହେଲା ?

ଶିଖା ॥ ଆଜ ଆମ ସାଇକୋଲଜି ପିଲା Picnicରେ ଯାଉଛନ୍ତି ।

ତପନ ॥ କୋଉଠିକି ?

ଶିଖା ॥ କୋଣାର୍କ ।

ତପନ ॥ ସିଗୁଚ—ମତେ କାହିଁକି ପଚାରୁଚ...···

ଶିଖା ॥ ନା...ମାନେ...କଥା କ'ଣ କି ?

ତପନ ॥ ଟଙ୍କା କେତେଟା ଦରକାର ?

ଶିଖା ॥ (ହସି) ହଁ—କଥା ହେଲା...

ତପନ ॥ କିଛି ହୋଇନ, ଗୁଡ଼, ହଁ କେତେ ଟଙ୍କା ହେଲେ ଚଳିବ ?

ଶିଖା ॥ ଟଙ୍କା ଶହେଟା ।

ତପନ ॥ ଶହେ ଟଙ୍କା ? ( ପକେଟରୁ ଟଙ୍କା ଦଉ ଦଉ ) ତତେ ନେଇ ଚଳିବା ଯାହା ମୁଁ ଦେଖୁଛି ନହାତ ଅସମ୍ଭବ । ( ଟଙ୍କା ନେଇ ଶିଖା ଖୁସିରେ ଚାଲି ଯାଉଥିଲା । )
ଶିଖା !

ଶିଖା ॥ (କୁର୍ଣ୍ଣିସ୍ ଭଙ୍ଗୀରେ) Yes sir !

ତପନ ॥ ହରିଆକୁ କହି ଦେ, ଜଳଖିଆ ନେଇ ଆସିବ ।

ଶିଖା ॥ ଆଚ୍ଛା (ଚାଲିଗଲା ପରେ ରକ୍ତା ଜଳଖିଆ ନେଇ ଆସିଚି)

ତପନ ॥ (ମୁହଁ ଫେରାଇ ନେଇ) ତମେ ?

ରକ୍ତା ॥ ହଁ, ଚାକରମାନଙ୍କ ସାଙ୍ଗରେ ଯେମିତି ବ୍ୟବହାର କରୁଚ ତମେ, ଏ ଘରେ କେହି ରହିବେନି ।

ତପନ ॥ ଏୟା ଶୁଣେଇବା ପାଇଁ ଆସିଲ ?

ରକ୍ତା ॥ ସେ ହରିଆ ଉପରକୁ କାହିଁକି ତମେ ତତଲା ଚା' ଫୋପାଡ଼ିଲ ?

ତପନ ॥ ଓଃ ! ସେ କୈଫିୟତଟା ତମକୁ ଦବାକୁ ପଡ଼ିବ ତା ହେଲେ ?

ରକ୍ତା ॥ ହଁ, ହରିଆକୁ ତୁମେ ଯା···ଚ୍ଛା-ତା ବ୍ୟବହାର କରିପାରିବନି । ସେ ମୋ ସାଙ୍ଗରେ ଆସିଥିଲା ।

ତପନ ॥ ସେଇଥି ପାଇଁ ତା' ବ୍ୟବହାର ଏମିତି ହେଇଚି ।

ରକ୍ତା ॥ କ'ଣ ସେ ତମର କଲା ଯେ ? ସାଢ଼େ ଆଠଟା ଯାଏଁ ଶୋଇଥିଲ ତୁମକୁ ଯାଇ ଉଠେଇ ଦେଲା, ଏଇଆ ତ ?

ତପନ ॥ ତମେ ଜାଣ ନିଦ ବେଳେ ମତେ କିଏ Disturb କଲେ···

ରକ୍ତା ॥ ସବୁବେଳେ ତମେ Disturb feel କରୁଛ, ଖାଲି ଶୋଇଥିବା ବେଳେ ନୁହେଁ । ଆଜକାଲି ତୁମ ପ୍ରକୃତି ଖୁବ୍ ଚିଡ଼ଚିଡ଼ା ହୋଇଗଲାଣି ।

॥ ଉନ୍‌ଶେଇଶ ॥

ତପନ ॥ ଗୁଣ୍ଡାଏ ଅଯଥା ବାଜେ ଲୋକଙ୍କୁ ଘରେ ପୁରାଇ ଏ ଘରଟା ତମେ ଗୋଟାଏ ଟାଉଁଆଖାନା କରି ସାରିଲଣି ।

ରିକ୍ତା ॥ (ଜଳଖିଆ ପ୍ଲେଟ୍ ଥୋଇଛି) ବେଶି ମୁଣ୍ଡ ଖରାପ କରନା; ଖାଇ ଦିଅ ।

ତପନ ॥ ନା ।

ରିକ୍ତା ॥ କ'ଣ ମୋ ହାତରୁ ଖାଇବନି ବୋଲି ଶପଥ କରିଛ ?

ତପନ ॥ ମତେ କହୁଛ ?

ରିକ୍ତା ॥ ମତେ ସବୁବେଳେ ଏମିତି ଆଘାତ ଦେଇ କ'ଣ ପାଅ ତମେ ?

ତପନ ॥ ହୁଁ ! ମେଲୋଡ୍ରାମା ଆରମ୍ଭ ହୋଇଗଲା !

ରିକ୍ତା ॥ କାଲି ରାତିରେ କେତେଟା ବେଳେ ଫେରିଲ ?

ତପନ ॥ ମନେ ନାହିଁ ।

ରିକ୍ତା ॥ ମୁଁ ଦୁଇଟା ଯାଏ ଅପେକ୍ଷା କରିଥିଲି ।

ତପନ ॥ ତମେ ମୋ' ପାଇଁ କ'ଣ ତ୍ୟାଗ କରୁଛ—ତା'ର ଗୋଟାଏ ତାଲିକା ଦେଖାଇବା ପାଇଁ ମୁଁ ତୁମକୁ କହିନି ।

ରିକ୍ତା ॥ ତମ ପାଇଁ ମୁଁ କ'ଣ କରୁଛି । ଆଉ କ'ଣ ନ କରୁଛି—ତମେ କେବେ ଜାଣିବା ପାଇଁ ଚେଷ୍ଟା କରିଛ ?

ତପନ ॥ ଓଃ ପ୍ଲିଜ୍ ରିକ୍ତା... ମୋ ସକାଳଟା ଏମିତି ନଷ୍ଟ କରନି ।

ରିକ୍ତା ॥ ମୋ' ମୁହଁ ଚାହିଁଲେ ତମର ଦିନଟା ନଷ୍ଟ ହୋଇ ଯାଉଛି, ମୋ' ଛୁଇଁ ପଡ଼ିଲେ ତମେ ଶୋଇପାରୁନ, ମୁଁ ତମର ବ୍ୟକ୍ତିତ୍ୱକୁ ଚୈଞ୍ଜ କରି ଦେଉଛି; ଅଥଚ ତମେ ମତେ କାହିଁକି ଯେ ବାହା ହେଲ......

ତପନ ॥ ସେଇଟା ମୋ' ଜୀବନର ଗୋଟାଏ ମସ୍ତବଡ଼ ଭୁଲ୍ । ଜାଣ ରିକ୍ତା, ମୁଁ ଜୀବନରେ କେଉଁଥିରେ କେବେ ଫେଲ୍ କରିନି । କିନ୍ତୁ ତୁମକୁ ଚିହ୍ନିବାରେ ମୁଁ ଭୁଲ୍ କଲି ।

॥ କ୍ରୋଡଏ ॥

ରିକ୍ତା ॥ ସେ ଭୁଲ୍‌ଟା ସଂଶୋଧନ କରି ଦେଉନା ? ଯୋଡ଼ାଏ ବର୍ଷ, କମ୍ବା ପିସ୍ତଲ୍‌ର ଗୋଟାଏ ଗୁଳିରେ ତ ଏ ଗଳଗ୍ରହଟା ତମ ଦେହରୁ ସହଜରେ ଖସିଯାଇ ପାରନ୍ତା...

ତପନ ॥ ଓଃ ! ମତେ ଟିକିଏ ଶାନ୍ତିରେ ବଞ୍ଚିବାକୁ ଦିଅ ରିକ୍ତା । ପ୍ରେତାତ୍ମା ପରି ତମେ କାହିଁକି ଏମିତି ମତେ ଜଳେଇ ପୋଡ଼େଇ ମାରୁଛ । ଯାଅ, ମୋ ସାମ୍ନାରୁ ଚାଲିଯାଅ । ନଚେତ୍‌······

ରିକ୍ତା ॥ ଧକ୍କା ଦେଇ ବାହାର କରିଦେବ—ଏଇଆ ତ ? କିନ୍ତୁ ଜାଣ ଆଦୌ ଭୟ ନାହିଁ । ଗତ ଦିନଟାରେ ଫେରି ତମେ ଯେଉଁ ଦିନ ମଦ ପିଇ ଜୋତାରେ ମାରିଥିଲ······ବାସ୍, ସେଇଟା ତ Climax—ସେଇଠି ମୋର ସବୁ ଯନ୍ତ୍ରଣାର ଶେଷ ହୋଇ ଯାଇଛି ।

ତପନ ॥ ତମେ ଯେମିତି ସେଦିନ ପାର୍ଟିରେ rusti c ଭଳି behave କରି ମତେ ଅପଦସ୍ତ କଲ— I should have divorced you.

ରିକ୍ତା ॥ କାହିଁକି, ତମ ସାଙ୍ଗରେ ମଦ ପିଇ ପାରିଲି ନାହିଁ ବୋଲି ?

ତପନ ॥ (ଚିତ୍କାର କରି) ରିକ୍ତା ! ତମେ ତମର ସୀମା ଲଙ୍ଘନ କରୁଛ । I warn you······( ଦ୍ରୁତ ପଦକ୍ଷେପରେ ପ୍ରସ୍ଥାନ)

(ବଗିଚ୍ଚପଟୁ ପ୍ରବେଶ କରିଛନ୍ତି ମେଜର୍ ବର୍ମା···ହାତରେ ରାଇଫଲ୍)

ମେ. ବର୍ମା ॥ (ରାଇଫଲ୍‌ଟିକୁ ସଫା କରୁ କରୁ) କିଏ, କିଏ, ଚାଲିଗଲା ? Spy, ଏଇଟା ଭିଏତ୍‌କଙ୍ଗର ବିଦେଶୀ ଡ୍ରାଗନ୍ ଭଳି । ଏମାନଙ୍କୁ ହତ୍ୟା କରିବା ଉଚିତ । ଆରେ ରିକ୍ତା, ତୁ' କାନ୍ଦୁଛୁ ? କ'ଣ ହୋଇଛି ମା' ?

ରିକ୍ତା ॥ କିଛି ନାହିଁ ବାପା । (ହସିବାକୁ ଚେଷ୍ଟା କରି) କାହିଁକି ? ମୁଁ କାନ୍ଦୁନଥିଲି ତ !

॥ ଏକୋଇଶି ॥

ମେ. ବର୍ମା ॥ ଶକ୍ତା, ମା ଜାଣିଛୁ ? ଜୀବନ ସାରା ଖାଲି ଲୁହକୁ ସାଥୀ କରି ମୁଁ ବଞ୍ଚିଆସିଛି । ତୋ ଲୁହକୁ ମୁଁ ବୁଝିବନି ତ ଆଉ ବୁଝିବ କିଏ ?

ଶକ୍ତା ॥ ଛି ବାପା, ଆପଣ ଏମିତି ଉତ୍ତେଜିତ ହୁଅନ୍ତୁ ନାହିଁ !

ମେ. ବର୍ମା ॥ ଶୁଣିଲି, ବାବୁ ତପନ ବର୍ମା ଆଜିକାଲି ଖୁବ୍ ମଦ୍ୟପାନ କରୁଛନ୍ତି । କାଲି ରାତିରେ କେତେବେଳେ ଘରକୁ ଫେରିଲା ?

ଶକ୍ତା ॥ (କେବଳ କାନ୍ଦୁଛି, ସେହି ଅପ୍ରସ୍ତୁତିକର ଅବସ୍ଥାରୁ ଖସି ଘର ଭିତରକୁ ଚାଲିଯାଇଛି)

ମେ. ବର୍ମା ॥ ମୁଁ କାଲି ରାତିସାରା ଶୋଇନି । କାରଣ ଗୁଜବରେ ମୁଁ ବିଶ୍ୱାସ କରେନା । ନିଜ ଆଖିରେ ଦେଖିବା ପାଇଁ ଚେଇଁଥିଲି । ରାତି ସାଢ଼େ ତିନିଟା ସ୍ପଷ୍ଟ ଥଣ୍ଡା—ମୁଁ ଥରି ଥରି ସେମିତି ପୂର୍ବ ଆକାଶଟାକୁ ଚାହିଁଥାଏ—ସେଇ ଘନୀଭୂତ ଅନ୍ଧକାର ଭିତରେ ମୁଁ ଦିଗନ୍ତର ସକାଳଟିଏ ଖୋଜୁଥିଲି । କିନ୍ତୁ ସେ ସକାଳ ଆସିଲା ନାହିଁ ।

[ ଆଉ ଜଣେ ଭଦ୍ରଲୋକ ତମ ତପନ ବର୍ମାକୁ ଟେକୁଥିବା ଅବସ୍ଥାରେ ଛାଡ଼ି ଦେଇଗଲା । ମୁଁ ସୋଫା ପଛପଟେ ଲୁଚିଗଲି (ଠିକ୍ ସେମିତି ଅଭିନୟ କରି ଆସି ସେ ଫା ପଛପଟେ ଲୁଚିଲେ—ରାଇଫଲ୍ ଠିକୁ ସଜେଇଲେ । ତାଙ୍କର ମନେ ପଡ଼ିଗଲା—ଗତ ରାତିରେ ଘଟିଥିବା ଘଟଣାଗୁଡିକ ଆଲୁଅର ଇଙ୍ଗିତରେ Flash back ସୂତ୍ରରେ ଦିଆଗଲା । ବାହାରୁ ତପନ ବର୍ମା ଡ଼ଳି ଡ଼ଳି ଆସିଲେ । ସିଡି ପାଖ ଦେଇ ଝୁଣ୍ଟି ପଡିଲେ ଓ ସେଠି ବାନ୍ତି କରିବାକୁ ଚେଷ୍ଟା କଲେ ଓ ତା ପରେ ସିଢ଼ି ଦେଇ ଉପରକୁ ଚାଲିଗଲେ । ଆଲୁଅ ସାମାନ୍ୟ ଫିକା ହୋଇ ନୀଳରଙ୍ଗ ନେଇ ପୁଣି ଜୀବନ୍ତର ହୋଇଛି ଏକ ଉନ୍ମାଦନାର ସଙ୍କେତ । ]

ମେ. ବର୍ମା ॥ Fire—fire these bastards (ଅନେକ ଗୁଡ଼ଏ ବୋମା, ତୋପ, ବନ୍ଧୁକ, ଢଢ଼ଢଡ଼, ମୃତ୍ୟୁର ଏକାସାଙ୍ଗରେ ଶୁଣାଗଲା । କୋଳାହଳ ହୋଇ ପୁଣି ସ୍ତବ୍ଧ । ମେ. ବର୍ମା ପୁଣି ସମ୍ବିତ ଫେର ପାଇଛନ୍ତି । ତାଙ୍କ ମୁଖ କରୁଣ । ପ୍ରାୟ କାନ୍ଦିଲା ପରି । ସେ ଭାରି ପଦକ୍ଷେପ ନେଇ ସୁନନ୍ଦାର ତୈଳଚିତ୍ର ପାଖକୁ ଯାଇଛନ୍ତି) ସୁନନ୍ଦା ! କିଛି ଶୁଣି ପାରୁଛ ସୁନନ୍ଦା ? ବିଶ୍ୱାସଘାତକ ଚୀନ ପୁଣି ଯୁଦ୍ଧ ଆରମ୍ଭ କରି-ଦେଇଛି, ମଥାରେ ମୋର ଚନ୍ଦନର ଟିକା ନାଇ ଦିଅ ସୁନନ୍ଦା, ଲୁହର ସାଞ୍ଜୁ ମୋତେ ପିନ୍ଧାଇ ସଣାପ୍ରତାପ ଭଳି ସଜେଇ ଦିଅ ।—ଶୁଣିବନି ମୁଁ ହାରିଗଲି ବୋଲି ଅଭିମାନ କରିଛ ? କିନ୍ତୁ ତୁମେ ଦେଖ ସୁନନ୍ଦା—ଆଉ ଗୋଟିଏ Chance ବିଜୟ ଗୌରବର ଟିକା ନେଇ ମୁଁ ଫେରି ଆସିବି—ଓଃ ତୁମ ହିମ ଶୀତଳ ନୀରବତା ମୁଁ ଆଉ ସହ୍ୟ କରିପାରୁନି ସୁନନ୍ଦା ! କେବେ ତୁମର ଧ୍ୟାନ ଭଗ୍ନ ହେବ (ମୁହଁରେ ଏକ କରୁଣ ଭାବ) ନା—ସେ ଆଉ ଶୁଣିବନି—(ପୁଣି ଥରେ ସେ ଭୟଙ୍କର ଶବ୍ଦ ଶୁଭିଲା) Major ପୁଣି ଥରେ ଉତ୍ତେଜିତ ହୋଇ ଉଠିଲେ ଓ ଦୌଡ଼ି ଗଲେ) "Fire" (ଚିତ୍କାରିଗଲେ ଭିତରକୁ—କିଛି ସମୟ ପରେ ଛୁରି ଓ ବଲ୍ଲଭ ବାଇଗଣ ନେଇ) କିଏ କହୁଛି ଭାରତର ଅସ୍ତ୍ରଶସ୍ତ୍ର ନାହିଁ ? ଏଇଟି ହୋଇଯାଉ ଆମର ପ୍ରଥମ ପରମାଣୁ ବୋମାର ବିସ୍ଫୋରଣ (ଗୋଟିଏ ବଲ୍ଲଭ ବାଇଗଣ କଚାଡ଼ିଲେ, ଏଇ ଅବସ୍ଥାରେ ପଶି ଆସିଛନ୍ତି ମୁକ୍ତିକାନ୍ତ । ପ୍ରଥମେ ଚମକି ଯାଇଛି ଓ ତା ପରେ ଡରିଯାଇ ନିଶ୍ଚଳ ଭାବରେ ଛେପ ଢୋକି ହସିଛି)

ମେ. ବର୍ମା ॥ କିଏ ତୁମେ କାର ଜଓ୍ୱାନ ? ଓଃ ! ଗୋଟିଏ ବୃଦ୍ଧ ପାଗଳ ବୋଲି ଡରିଗଲ ବୋଧେ ?

॥ ଚୈଈଶି ॥

ମୁକ୍ତ ॥ ଆପଣ ପାଗଳ ! (ହସିଛୁ ବୋକାଙ୍କ ଭଳି) ମୋର ତ ମନେ ହେଉଛି ଆପଣ ଗୋଟିଏ ଦୁଷ୍ଟ ବାଳକ ।

ମେ. ବର୍ମା ॥ ଓଃ ! ମୁଁ ତା ହେଲେ ପାଗଳ ନୁହେଁ (ଖୁବ୍ ଜୋର୍‌ରେ ହସିଲେ) ତୁମେ ବୋଧହୁଏ ଭୁଲ ଦେଖିଲ ବାଳକ ! ତୁମ ନାଁଟା ମାନେ ହଠାତ୍ (ଭୁଲିଯିବାର ଅଭିନୟ କର)

ମୁକ୍ତ ॥ ମୋ ନାଁ ? ମୁଁ ଶ୍ରୀ ମୁକ୍ତକାନ୍ତ ଚୌଧୁରୀ ।

ମେ. ବର୍ମା ॥ ହୋଇପାରେ ତୁମ ନାଁ — ଶ୍ରୀ ମୁକ୍ତକାନ୍ତ ଚୌଧୁରୀ କିମ୍ବା ମୋ ନାଁ ଶ୍ରୀ ଗଗନବିହାରୀ ବର୍ମା । ଆମେ କ'ଣ ତା ହେଲେ ଗୋଟିଏ ନାମବାଚକ ବିଶେଷ୍ୟ ?

ମୁକ୍ତ ॥ ହଁ, ହଁ — ଡାକ୍ତର ବସୁ ଠିକ୍ ଏମିତି କହୁଥିଲେ ।

ମେ. ବର୍ମା ॥ ଡାକ୍ତର ବସୁ ?

ମୁକ୍ତ ॥ ହୁଁ, ଡାକ୍ତର ବସୁ ।

ମେ. ବର୍ମା ॥ ମୁଁ — ତାଙ୍କୁ···କୋଉଠି···ଦେଖିଛି ।

ମୁକ୍ତ ॥ ଭାରି ବଢ଼ିଆ ଲୋକ, ନାହିଁ ? ସବୁବେଳେ ହସହସ । ମନରେ ଚିନ୍ତା ନାହିଁ, ଜୀବନରେ ଦୁଃଖ ନାହିଁ । ମାନେ ଯେମିତି ସାତ ସମୁଦ୍ର ସେପାଖରେ ନଡ଼ିଆଗଛ ଭରା ଗୋଟେ ଦ୍ୱୀପଟିଏ । ଚାରିପଟେ ନୀଳ ନୀଳ ସମୁଦ୍ର ଖୁବ୍ ମିଠା ପବନ ବହେ । ଆଉ ସେ ପବନ ଭିତରେ ହୀରା ନୀଳା ଭଳି ସୂର୍ଯ୍ୟକିରଣ ବିଞ୍ଚି ହୋଇ ଯାଆନ୍ତି·····ନାଁ ନାଁ ହେଲାନି ମୋର ଟିକିଏ ଅପରିଣତ ମସ୍ତିଷ୍କ କିନା — ଜାଣନ୍ତି । ଡାକ୍ତର ବସୁ କହୁଥିଲେ ମୁଁ ଯୋଉ ସେଇ ପାଗଳାଖାନାରେ ଥିଲି, ସେଇଠି ମୁଁ ପାଗଳ ନଥିଲି — ମୋର ଖାଲି ଟିକିଏ ଅପରିଣତ ମସ୍ତିଷ୍କ ଥିଲା । (ହସି ଦେଉଛି)

ମେ. ବର୍ମା ॥ ଆଚ୍ଛା ! ତାଙ୍କର ବୟସ କେତେ ?

ମୁକ୍ତକାନ୍ତ ॥ ବହୁତ, ବହୁତ ବର୍ଷ । ଆମର ଡ଼ାକ୍ତରଖାନା ପଛପଟେ ସେଇ ଯେଉଁ ପାହାଡ଼ ନଥିଲା ? ତା'ର ବୟସ କେତେ ? ......ହଁ ତାର ବୟସ ଯେତେ ଡାକ୍ତର ବସୁଙ୍କର ବୟସ ତାଠାରୁ ବେଶି । ଜାଣନ୍ତି ଡ଼ାକ୍ତର ବସୁ କହୁଥିଲେ— ସେ ପାହାଡ଼ଟା କେମିତି ଏତକରୁ ଏତେ ବଡ଼ ହେଲା । ଆଉ ଆସ୍ତେ, ଆସ୍ତେ ତା' ଉପରେ ଜଙ୍ଗଲ ହେଲା, ଅଗନାଗିନ ବନସ୍ତ, ଡ଼ାକ୍ତର କହନ୍ତି ସେ ପାହାଡ଼ଟା କୁଆଡ଼େ......

ମେ. ବର୍ମା ॥ ହଁ, ବେଳେ ବେଳେ ସମୁଦ୍ର କାଳରେ ଠିଆ ହୋଇ ଦିଗ୍‌ବଳୟ ଆରପାଖକୁ ଚାହିଁଲେ, ଡ଼ାକ୍ତର ବସୁ ଦେଖା ଦଅନ୍ତି । ହାତଠାରି ମୋତେ ଡ଼ାକ ନେଇ ସେଇ ପାହାଡ ଉପରେ ଠିଆ କରେଇ ଦଅନ୍ତି । ମୁଁ ଖୁବ୍ ଏକା ହୋଇଯାଏ । ତଳକୁ ଚାହିଁଲେ ମଣିଷଗୁଡ଼ାକ ଖୁବ୍ କଣେଇ ପରି ଦିଶନ୍ତି । ଘର ଗୁଡ଼ାକ......

ମୁକ୍ତକାନ୍ତ ॥ (ମେଜର ବର୍ମାଙ୍କର ପାଦତଳେ ଲମ୍ବ ହୋଇ ପଡ଼ଯାଇଛି । ହସି ହସି ମୁଗ୍‌ଧ ହୋଇ ଠିଆ ହୋଇଛି)

ମେ. ବର୍ମା ॥ ଆରେ, ଆରେ ଏ କଣ ମୁକ୍ତକାନ୍ତ ?

ମୁକ୍ତକାନ୍ତ ॥ ଆପଣ ଜଣେ ଜ୍ଞାନୀ ଲୋକ । ଡ଼ାକ୍ତର ବସୁ କହୁଥିଲେ ଜ୍ଞାନୀ ଲୋକମାନଙ୍କର ପାଦ ଛୁଇଁ ପ୍ରଣାମ କରିବା ଉଚିତ୍ ।

ମେ. ବର୍ମା ॥ ତମେ ମୁକ୍ତକାନ୍ତ ଭାରି Fresh ଜଣାଯାଉଛ । ଆଖି ଦିଇଟା ଏପର୍ଯ୍ୟନ୍ତ ନିଷ୍ପାପ ଶିଶୁ ଭଳି ଜକ୍ ଜକ୍ କରୁଛି ।

ମୁକ୍ତକାନ୍ତ ॥ (ମୁଣ୍ଡ ହଲଇଛି, ଯେପରି ସବୁ ବୁଝିଗଲା) ହଁ ଡ଼ାକ୍ତର ବସୁ ସେଇଆ କହୁଥିଲେ । ମୋର ଟିକିଏ ଅପରିଣତ ମସ୍ତିଷ୍କ ଥିଲା କି ନା ।

ମେ. ବର୍ମା ॥ (ବର୍ମା ପଦଚାରଣ କଲେ, କିଛି ଭାବିଲା ଭଳି) ଆଚ୍ଛା ମୁକ୍ତକାନ୍ତ ତୁମେ ମୋ ଠିକଣାଟା କେମିତି ପାଇଲ ?

॥ ପଟାକ୍ଷେପ ॥

ମୁକ୍ତକାନ୍ତ ॥ ଆପଣଙ୍କ ଠିକଣା ? ଶ୍ରୀ ଗଗନବିହାରୀ ବର୍ମା । ମଳୟ ନିବାସ । ଶାରଦା ଦେବୀ ରୋଡ୍, ପୁରୀ ।

ମେ. ବର୍ମା ॥ ନାଁ, ମୁଁ ମୋ ଠିକଣା ଜାଣିଛି । ମୁଁ ପଚାରୁଥିଲି ତୁମେ କିମିତି ଜାଣିଲ ?

ମୁକ୍ତକାନ୍ତ ॥ ଡାକ୍ତର ବସୁଙ୍କ ପାଖରେ ମୋର ଗୋଟାଏ ଫଟୋ ଥିଲା । ଆଉ ସେ ଫଟୋର ପଛପଟେ ଆପଣଙ୍କ ଠିକଣା ଥିଲା ।

ମେ. ବର୍ମା ॥ ତୁମେ ଠିକଣା ଦେଖିଛ ? ଆଶ୍ଚର୍ଯ୍ୟ ନାଁ । ଆଶ୍ଚର୍ଯ୍ୟ ହେବାର କଣ ଅଛି । ପାଗଳ କିନା, ଭୁଲି ଯାଇ ଥାଇପାରେ । ତୁମେ ସେ ଫଟୋଟା ମୋତେ ଦେଖାଇ ପାରିବ ? (ମୁକ୍ତକାନ୍ତ ମେଜର ବର୍ମାଙ୍କୁ ସେ ଫଟୋଟିକୁ ଦେଇଛି । ମେଜର ବର୍ମା ଅତି ନିବିଷ୍ଟ ଭାବରେ ସେ ଫଟୋଟିକୁ ଦେଖିଛନ୍ତି । ଅନ୍ତରାଳରୁ ଶୁଭୁଛି ଆଜକୁ ଠିକ୍ ପଚିଶ ବର୍ଷ ତଳେ...(ମଞ୍ଚର ଆଲୁଅ ମ୍ଳାନ ହେଲା)

ଅନ୍ତରାଳରୁ ॥ ସେତେବେଳେ Major Burma ଥାଆନ୍ତି ଗୌହାଟିରେ । ଅବିନାଶ ପଟ୍ଟନାୟକ ଥିଲା ତାଙ୍କ Army ଜୀବନର ଘନିଷ୍ଠ ବନ୍ଧୁ । ସେ ଅବିନାଶ ପଟ୍ଟନାୟକଙ୍କର ଗୁପ୍ତପ୍ରଣୟ କାହାଣୀର ଏକ ଯନ୍ତ୍ରଣା ଦଗ୍ଧ ମୂକସାକ୍ଷୀ ଥିଲେ । ସେଦିନ ଏକ ଝଡ଼ ବର୍ଷା ବିଧୂର ରାତି । ଅଳକା ତାର ଅବୈଧ ସନ୍ତାନକୁ ଧରି ପହଞ୍ଚିଥିଲା Major Burmaଙ୍କ ଘରେ ।

ଅଳକାର କଣ୍ଠ ॥ ମୋତେ ବଞ୍ଚାଅ ଗଗନ ଭାଇ । ଅବିନାଶ ପଟ୍ଟନାୟକଙ୍କର ଏ ସନ୍ତାନକୁ ନେଇ ଘରକୁ ଗଲେ, ମୁଁ ତାର କି ପରିଚୟ ଦେବି ?

ଅବିନାଶର କଣ୍ଠ ॥ ତଥାପି ସମୟ ଅଛି । ତମେ ବର୍ତ୍ତମାନ ତାକୁ ନିଶ୍ଚିହ୍ନ କରି ଦେଇ ପାର । ତା ପରେ ନୂଆ କରି ଜୀବନ ଆରମ୍ଭ କରିବାରେ ଆମର କୌଣସି ଅସୁବିଧା ହେବନି ?

ଅଳକାର କଣ୍ଠ ॥ ଅବିନାଶ !

ଅବିନାଶର କଣ୍ଠ ॥ ହଁଅ ! ତୁମେ ଯନ୍ତ୍ରଣା ପାଉଛ ମତେ ହଁଅ । ମୁଁ ତୁମ କଳଙ୍କର ଏଇ ଶେଷ ଚିହ୍ନଟାକୁ ଲିଭାଇ ଦେବି ।

ନାରୀ କଣ୍ଠ ॥ ଅବିନାଶ ! ତୁମେ ଯେ ତାର ବାପା । ତମେ ବାପ ହୋଇ ଏକଥା କହି ପାରୁଛ ? କିନ୍ତୁ କାହିଁକି ? ମୋ ଜୀବନଟାକୁ ଏମିତି ନଷ୍ଟ କଲ ଅବିନାଶ ? ମୁଁ ତୁମର କଣ କ୍ଷତି କଲି ?

ମେ. ବର୍ମା ॥ (୨୫ ବର୍ଷ ତଳର ଅତୀତକୁନେଇ ଅଭିନୟ କଲେ) କିନ୍ତୁ ଏ ପରିସ୍ଥିତିରେ ମୁଁ କଣ କରିପାରିବି । ଅବିନାଶଟା ଗୋଟାଏ Coward ନାରୀକୁ ଉପଭୋଗ କରି ଜାଣେ । ମାତୃତ୍ୱର ସମ୍ମାନ ଦେଇ ପାରେନା । ବର୍ତ୍ତମାନ ମୁଁ ଅବିନାଶକୁ ଡ଼ାକୁଛି । ତୁମେ ନିଜ ନିଜ ଭିତରେ ନିଷ୍ପତ୍ତି କରିନିଅ । ତୁ ତାକୁ ପୁଣି ଥରେ ବୁଝିବାକୁ ଚେଷ୍ଟାକର ଅଳକା (ପୁଣି ସେଇ ଝିଅର ସ୍ୱର ବନ୍ଦ, ତାର ଭିତରେ ଫୋନ ବାଜିବାର ଶବ୍ଦ । ଅନ୍ତରାଳରୁ ଶୁଭୁଛି ପୁରୁଷର କଣ୍ଠ)

ପୁରୁଷ କଣ୍ଠ ॥ ଗୋଟିଏ ସ୍ୱପ୍ନ ଭଳି ଆମର ସେଇ ଅଶ୍ଳୀଳ ଅତୀତଟାକୁ ଭୁଲିଯାଅ ଅଳକା ।

ଅଳକାର କଣ୍ଠ ॥ ବିଶ୍ୱାସଘାତକ । ଧପ୍‌ପାବାଜ । ଯାଅ—ଚାଲିଯାଅ— ଚାଲିଯାଅ ମୋ ସାମନାରୁ !

ପୁରୁଷ କଣ୍ଠ ॥ ଠିକ୍ ଅଛି । (ତା ପରେ ମଚ ମଚ ଜୋତାର ଶବ୍ଦ, ଆର୍କେଷ୍ଟ୍ରା ଫେଡ ଆଉଟ । ମଞ୍ଚର ଆଲୁଅ ଆସ୍ତେ ଆସ୍ତେ ବଢିଛି । ମେଜର ବର୍ମା ଭାରି ପଦକ୍ଷେପ ନେଇ ଯାଇଛନ୍ତି ଇଜେଲ ପାଖକୁ । ଧୀରେ ଧୀରେ ମୁକ୍ତକାନ୍ତ ଯାଇ ଠିଆ ହୋଇଛି, Major Burma ଙ୍କ ପାଖରେ)

॥ ସବେଇଶି ॥

ମେ. ବର୍ମା ॥ ହଁ ମୁକ୍ତକାନ୍ତ ! ସେଇ ଏକ ନାରୀର ପତିତ ଜୀବନର ଅଶ୍ରୁସିକ୍ତ କାହାଣୀ । ଚବିଶ ବର୍ଷ ତଳର ସେ ଅଶ୍ରୁସିକ୍ତ ଅଶୁଭ ସଂଧ୍ୟାର କଥା ମନେ ପଡିଗଲେ ମୋ ଦେହ ଶିହରି ଉଠୁଛି ବାବା । ତୋତେ ମୋର କୋଠରିରେ ଘୁଡ଼ି ଦେଇ ତୋ ମା ସେ ଦିନ ତିନି ମହଲା କୋଠରି ଉପରୁ ଡ଼େଇଁ ପଡି ଆତ୍ମହତ୍ୟା କରିଥିଲା ।

ମୁକ୍ତକାନ୍ତ ॥ (ଆଖିରେ ଲୁହ କଣ୍ଠରେ ଆର୍ଦ୍ରତା) କାହିଁକି ଜାଣେ ନା… ମୁଁ ବୁଦ୍ଧି ପାଇଲା ଦିନରୁ ମୋର ବାପା ମା'ଙ୍କୁ ଖୋଜୁଛି । ହେଲେ ମୋ ଜନ୍ମର ଇତିହାସ କେହି କହି ପାରିନାହାନ୍ତି । ଅନେକ ବଡ଼ ଲୋକଙ୍କୁ ପଚାରିଛି…ସମସ୍ତେ ମୋତେ ଘୃଣା କରିଛନ୍ତି…କାହାଠାରୁ ଟିକିଏ ସ୍ନେହ ମାଗିଲେ ଓଲଟି ପାଗଳାଟା ବୋଲି ଡ଼େଲାମାଡ଼ ହୋଇଛି ।

ମେ. ବର୍ମା ॥ ହଁ ସମାଜ ଆଖିରେ ତୁମେ ଗୋଟାଏ ଅବୈଧ ସନ୍ତାନ । ତମ ବାପା ଓ ମା ବିବାହ ଶୃଙ୍ଖଳାକୁ ଭାଙ୍ଗିଥିଲେ…।

ମୁକ୍ତକାନ୍ତ ॥ କିନ୍ତୁ ମୁଁ ? ମୁଁ ତ କେବେ ଜନ୍ମ ହେବାକୁ ଚାହିଁ ନଥିଲି । ମୋର ଦୋଷ କଣ ? ମୁଁ କିଏ ?

ମେ. ବର୍ମା ॥ ତମ ଜନ୍ମର କାହାଣୀଟା ମୁଁ ଆଜ କହି ଦେଇ ଭୁଲ୍ କରିଛି ମୁକ୍ତକାନ୍ତ । ଦଶଦିନ ହେଲା ତୁମେ ଆସିଲଣି । ଜାଣି ଜାଣି ଏ ପର୍ଯ୍ୟନ୍ତ ସେ ସବୁ ମୁଁ କହିନଥିଲି Oh, I am sorry.

ମୁକ୍ତକାନ୍ତ ॥ ମତେ ଆଜ ଖୁବ୍ ହାଲୁକା ଲାଗୁଛି । ଜାଣ ତ ? ମତେ ଯେତେବେଳେ ଲାଗେ ଯେ ଏ ପୃଥିବୀରେ ମୋର କେହି ନାହାନ୍ତି…ମୁଁ ଏକା ଏକା ଜଙ୍ଗଲକୁ ଚାଲିଯାଏ । ଜଙ୍ଗଲରେ ମୁଁ ମୋର ପରିଚୟ ଖୋଜେ । ମୁଁ କିଏ କାହିଁକି ଆସିଲି ପଚାରେ…ଆକାଶକୁ ପଚାରେ…ମାନେ ମୁଁ ଠିକ୍ ଜାଣି ପାରେନା । ଡ଼ାକ୍ତର ବସୁ କହନ୍ତି ମୁଁ ଅମୃତର ସନ୍ତାନ…ଅମୃତ କଣ ?

॥ ଅଠାଇଶି ॥

ମେ. ବର୍ମା ॥ (ଖୁବ୍ ଜୋରରେ ହସିଲେ) ଅମୃତ ? ଅମୃତ କଣ ?
କେଜାଣି...!! ହୋଇପାରେ, ସମୁଦ୍ର ପାଖରୁ, ଆକାଶ
ପାଖରୁ, ଆଉ ସେ ଜଙ୍ଗଲ ଭିତରୁ ଫେରି ଆସୁଥିବା
ପ୍ରତିଧ୍ୱନି ଭଳି...ଗୋଟାଏ ଶବ୍ଦ ଯାହାର ଆକାର ନାହିଁ ।
ହୋଇପାରେ, ତୁମେ ତାର ସନ୍ତାନ...!

ମୁକ୍ତକାନ୍ତ ॥ (ସବୁ ବୁଝିଗଲା ପରି) ଓ...ହଁ...ହଁ...।
(ହଠାତ୍ ବାହାରୁ କାର୍ ହର୍ଣ୍ଣ ଶୁଭିଲା । ଗଗନ ବର୍ମା ଚଞ୍ଚଳ
ହୋଇ ଉଠିଲେ)

ମେ. ବର୍ମା ॥ ମୁଁ ତା ହେଲେ ଆସୁଛି ଯୁବକ...(ପଛରୁ ଫେରି) ଆଚ୍ଛା !
ତୁମ ପାଖରେ କିଛି ଟଙ୍କା ଅଛି ।

ମୁକ୍ତକାନ୍ତ ॥ ଟଙ୍କା ?

ମେ. ବର୍ମା ॥ ହଁ, ଟଙ୍କା କେତେଟା ମୋର ଦରକାର ଥିଲା ।

ମୁକ୍ତକାନ୍ତ ॥ ଦରକାର ଥିଲା ? ମୋ ପାଖରେ ଅଛି । ନେବେ ?

ମେ. ବର୍ମା ॥ କେତେ ଟଙ୍କା ଅଛି ? (ଆଶ୍ଚର୍ଯ୍ୟ ରକମର ଇଙ୍ଗିତ ଦେଇ)

ମୁକ୍ତକାନ୍ତ ॥ ଅନେକ ଟଙ୍କା ଅଛି । ଆପଣଙ୍କର ସବୁଗୁଡାକ
ଦରକାରରେ ଆସିବ ?

ମେ. ବର୍ମା ॥ ହଁ ଦିଅ । (ସେଇ ରହସ୍ୟମୟ ଇଙ୍ଗିତରେ)

ମୁକ୍ତକାନ୍ତ ॥ (ପକେଟରୁ ପଇସା ବାହାର କରି) ନଅନ୍ତୁ ।

ମେ. ବର୍ମା ॥ Oh, thank you my blessed angel ! (ଚାଲିଯାଉଥିଲେ,
ପ୍ରାୟ ଦୌଡ଼ିଲା ପରି ବାହାରକୁ ହଠାତ୍ ଫେରି) ଶୁଣ,
ଇଂଜିନିୟରକୁ ଏସବୁ କିଛି କହିବ ନାହିଁ ।

ମୁକ୍ତକାନ୍ତ ॥ ସେ ପଚାରିଲେ କହିବ ନିଶ୍ଚୟ ।

ମେ. ବର୍ମା ॥ ମାନେ ?

ମୁକ୍ତକାନ୍ତ ॥ (ହସି) ମାନେ...କଥା ହେଲା (ଛେପ ଢୋକି) ମୁଁ ମିଛ
କହି ପାରେନା ।

॥ ଅଣତରିଶି ॥

ମେ. ବର୍ମା ॥ ମିଛ କହ୍ବ ପାରନା ?

ମୁକ୍ତିକାନ୍ତ ॥ ଆଜ୍ଞା, ନା । ମିଛ କହିଲେ ମୋ ଗ୍ଣଡଟା ଧଡ଼ ଧଡ଼ ହୋଇ ଉଠେ । ମନେ ହୁଏ ମୁଁ ଯେମିତ ମୂର୍ଚ୍ଛା ହୋଇଯିବ ।

ମେ. ବର୍ମା ॥ ତୁମେ ଗୋଟିଏ Brilliant coward । ମିଛ କହିଲେ ମୂର୍ଚ୍ଛା ହୋଇଯିବ ।

ମୁକ୍ତିକାନ୍ତ ॥ ମାନେ...ଠିକ୍ ଯେ କମିତ ବୁଝାଇବ...କଥାଗୁଡ଼ାକ ଠିକ୍ ମୋ ପାଟିକି ଆସେନା, ନା...ମାନେ ଆପଣଙ୍କର ପିସ୍ତଲଟାରେ ମତେ ଯଦି ମାରି ଦେଇ ପାରନ୍ତେ · କମିତ ମାରନ୍ତେ ? ମାନେ, କଥା ହେଲା ମିଛ କହିଲା ବେଳେ... ମୁଁ ପିଲା ଦିନେ ଦି ଗ୍ଣର ଥର ମିଛ କହିଛି···ମତେ ଲାଗେ ମୁଁ ଯେମିତ ଗୋଟାଏ ଅନ୍ଧାରୁଆ କୂଅ ଭିତରକୁ ଧୀରେ ଧୀରେ ଖସି ଯାଉଛି । ତା ପରେ ମୋତେ ଭୟ ଲାଗେ । ମୋର ମନେ ହୁଏ, ଯେମିତ ପୃଥିବୀ ସାରା ସମସ୍ତେ ମୁଁ ମିଛ କହୁଛି ବୋଲି ଜାଣି ପକାଇଲେ । ଏମିତ ଯେ କାହିଁକି ହୁଏ (ଏହି ସଂଳାପଟି କହିବା ବେଳେ ମଞ୍ଚର ଗୋଟିଏ କୋଣକୁ ଗ୍ଣଲିଯାଇଛି । ପଛପଟେ ମେ. ବର୍ମା ଚୁପ୍ କରି ଖସି ଦୌଡି ପଳାଇଛନ୍ତି । ବାହାର ଦରଜା ଖୋଲି ପ୍ରବେଶ କରିଛନ୍ତି ତପନ ଓ ମୁକ୍ତିକାନ୍ତ ପାଖକୁ ଯାଇଛନ୍ତି । ତପନ ମେ. ବର୍ମାଙ୍କୁ ଦୌଡ଼ି ପଳାଇଯିବା ଅବସ୍ଥାରେ ଦେଖିଛନ୍ତି)

ତପନ ॥ କ'ଣ ହେଲା ? ବାପା ଏମିତ ଦୌଡ଼ି ଗ୍ଣଲିଗଲେ କାହିଁକି ?

ମୁକ୍ତିକାନ୍ତ (ହଠାତ୍ ଚମକି ଉଠି) ବାପାଙ୍କ ସାଙ୍ଗରେ ବର୍ତ୍ତମାନ କଥାବାର୍ତ୍ତା କରୁଥିଲି । କେଜାଣି······।

ତପନ ॥ କିନ୍ତୁ ଏଇ ଯେ ବଗିଚ୍ଛ ପଟେ ଦୌଡ଼ି ଗ୍ଣଲିଗଲେ ।

ମୁକ୍ତିକାନ୍ତ ॥ ଓଃ ଦୌଡ଼ି ଗ୍ଣଲିଗଲେ ? ସେଇଥି ତ ମୁଁ ଭାବୁଥିଲି, ଏତେ ଟଙ୍କା ନେଇ ସେ କଣ କରିବେ ?

ଚପଳ ॥ ଏତେ ଟଙ୍କା ! କୋଉ ଟଙ୍କା ?

ମୁକ୍ତିକାନ୍ତ ॥ ସେ ଯେଉଁ ମୋଠୁ ବର୍ତ୍ତମାନ ନେଲେ.....

ଚପଳ ॥ ବାପା ତୁମଠୁ ଟଙ୍କା ନେଲେ କାହିଁକି ? କେତେ ଟଙ୍କା ?

ମୁକ୍ତିକାନ୍ତ ॥ ମୁଁ ଗଣିନି । ମୋ ପାଖରେ ଯାହାଥିଲା, ଦେଇ ଦେଲି ।

ଚପଳ ॥ ସେ ବର୍ତ୍ତମାନ କେଉଁଆଡ଼େ ଗଲେ ? ଓଃ କଣ ଯେ ହେଉଛି ଘରେ । ବୁଢ଼ାଏ ପାଗଳ ଆସି ଏଠି ଯୁଟି...ଗୋଟାଏ Mental asylumରେ ପରିଣତ କରି ଦେଲେଣି (ହଠାତ୍ ଚିତ୍କାର କରି) ତୁମେ କାହିଁକି ତାଙ୍କୁ ଟଙ୍କା ଦେଲ ?

ମୁକ୍ତିକାନ୍ତ ॥ ମତେ ଯେ ସେ ମାଗିଲେ.....

ଚପଳ ॥ ମାଗିଲେ ମନା କଲନି କାହିଁକି ?

ମୁକ୍ତିକାନ୍ତ ॥ କି ଆଶ୍ଚର୍ଯ୍ୟ ! ସେ ମାଗିଲେ, ମାନେ ଦରକାର ଥିବ ନିଶ୍ଚୟ । ତା' ଛଡ଼ା ପାଖରେ ଟଙ୍କା ଥାଇ, ମୁଁ ମନା କରନ୍ତି କିପରି ?

ଚପଳ ॥ ଆଉ କ'ଣ ପକେଟରେ ଯାହା ଥିବ, ସବୁ ଦେଇ ଦେବ ?

ମୁକ୍ତିକାନ୍ତ ॥ ଦେଇଦେଲି ତ.....

ଚପଳ ॥ ମନେ ରଖ—ସେ ଟଙ୍କାରୁ ନୂଆପଇସାଟେ ମଧ୍ୟ ଫେରି ପାଇବନି ।

ମୁକ୍ତିକାନ୍ତ ॥ ଫେରି ପାଇବ ! କାହିଁକି ? ଫେରାଇବା କ'ଣ ଦରକାର ଯେ ? ମୋର ଥିଲା, ସେ ନେଲେ ।

ଚପଳ ॥ ବଡ଼ ଅଦ୍ଭୁତ ଲୋକ ତୁମେ ! ପାଗଳା ଗାରଦରେ ଥିଲ—ଯାହା ମାଗିଲେ ତା' ଦେଉଛ—ଖୁବ୍ ବଢ଼ିଆ ଆର୍କି ପାରୁଛ—ଏ ସବୁ କଥା ଏକାଠି ଯେ ତମ ପାଖରେ କେମିତି ହେଲା...! Strange ! Really strange ! (ତାଙ୍କର ଯଥା ସୁଲଭ Smart ଭଙ୍ଗୀରେ ଚାଲି ଯାଇଛନ୍ତି । ମୁକ୍ତିକାନ୍ତ

॥ ଏକଚିରଣି ॥

ବଗିଚ୍ଚ ପଛ ଦେଇ ଯିବାକୁ ଉଦ୍ୟତ ହେବାବେଳେ ପ୍ରବେଶ କରନ୍ତି ଶିଖା)

ଶିଖା ॥ ଆରେ ମୁକ୍ତକାନ୍ତ ବାବୁ ଯେ...ଆଜ କେମିତି ହଠାତ୍ ବଗିଚ୍ଚ, ଜଙ୍ଗଲ ଆଉ ପ୍ରକୃତିକୁ ଛାଡ଼ି ଏଇ ବୈଠକଖାନା ଭିତରେ !

ମୁକ୍ତକାନ୍ତ ॥ ବୈଠକଖାନା...(ଯେମିତି ଶବ୍ଦଟାକୁ କେଉଁଠି ଶୁଣିଥିଲା ଭଳି ମନେ ପକାଇ) ହଁ, ହଁ ଏଇଟାକୁ ବୈଠକଖାନା କୁହାଯାଏ......।

ଶିଖା ॥ (ଥଟ୍ଟା କରି) ଏଇଟାକୁ ବୈଠକଖାନା କୁହାଯାଏ ? ଯାହା ହେଉ ।

ମୁକ୍ତକାନ୍ତ ॥ (ସବୁ ବୁଝିପିବା ଭଳି) ମୁଁ ଏମିତି ଅନେକ କଥା ଜାଣିଛି...।

ଶିଖା ॥ (ହସି ହସି ଗଡ଼ି ଯାଇ) ସତେ ! (ରକ୍ତାର ପ୍ରବେଶ)

ରକ୍ତା ॥ ଭାଇ ଆସିଲେଣି ?

ଶିଖା ॥ ହଁ ବାହାରେ ତ ଗାଡ଼ିଟି ଥୁଆ ହୋଇଛି ।

ରକ୍ତା ॥ କାହିଁକି ତମେ ଯେ ତାଙ୍କ ସାଙ୍ଗରେ ଲାଗିଛ...।

ଶିଖା ॥ ଜାଣିଛ ଭାଉଜ ! ମୁକ୍ତକାନ୍ତ ବାବୁ ଅନେକ କଥା ଜାଣିଛନ୍ତି ।

ମୁକ୍ତକାନ୍ତ ॥ (ରକ୍ତାକୁ) ଆପଣ ହସନ୍ତୁ । ମତେ ଦେଖିଲେ ଆପଣଙ୍କୁ ହସ ମାଡୁ ନା ।

ରକ୍ତା ॥ ହସ ? କାହିଁକି ?

ମୁକ୍ତକାନ୍ତ ॥ ମତେ ସମସ୍ତେ ଦେଖିଲେ ହସନ୍ତି କି ନା ?

ରକ୍ତା ॥ ହରିଆ ଜଳଖିଆ ନେଇ ଦେଲା ତ ?

ମୁକ୍ତିକାନ୍ତ ॥ (ହଠାତ୍ ମନେ ପଡ଼ିଲା ଭଳି) ଆରେ ହ ମୋର ମନେ ନଥିଲା । ସତରେ ଭାରି ଭୋକ ହେଉଛି । ମାନେ କଥା କ'ଣ କି Hospitalରେ ଆମର ଯେଉଁ ବ୍ରେକ୍‌ଫାଷ୍ଟ ମିଳୁଥିଲା ସେଇଟା ଖୁବ୍ ସକାଳୁ ସକାଳୁ । ମାନେ ସକାଳୁ ଉଠି ଖାଇବା ମୋର ଗୋଟାଏ ଅଭ୍ୟାସ ଥିଲା ।

ଶକ୍ତା ॥ ଆହା, ତାହା ହେଲେ ମୁଁ ଜଳଖିଆ ନେଇ ଆସୁଛି ହରିଆ ! ହରିଆ !!

ଶିଖା ॥ ଆଉ ଡାକନା, ବରଂ ଜଳଖିଆଟା ମୁଁ ନେଇ ଆସୁଛି । ଭାଇ ତା ମୁହଁକୁ ଗୁଁ ଫୋପାଡ଼ ଦେଇଛନ୍ତି ବୋଲି, ରୁଷି ଛି (ପ୍ରସ୍ଥାନ)

ଶକ୍ତା ॥ ମୁଁ କାଲିଠୁଁ ସକାଳୁ ସକାଳୁ ଜଳଖିଆ ପଠାଇ ଦେଉଥିବି ।

ମୁକ୍ତିକାନ୍ତ ॥ ମୁଁ ଆସି ଏଇଠି ରହିବା ପରେ ଆପଣଙ୍କର ଖୁବ୍ ଅସୁବିଧା ହେଉଛି, ନାଇଁ ?

ଶକ୍ତା ॥ ନା, ନା, ଅସୁବିଧା ହେବ କାହିଁକି ?

ମୁକ୍ତିକାନ୍ତ ॥ ଠିକ୍ ଅଛି । ବହୁତ ଦିନ ହେଲା ସେ Hospital ରେ ରହି ···ମାନେ କଥା ହେଲା— ମୁଁ ଠିକ୍ ବୁଝାଇ ପାରୁନି··· ଆପଣଙ୍କର ମାନେ···ଆପଣଙ୍କ ଭଳି ମୁଁ କେବେ ଚଳିନି କି ନା ? ସେଇଥି ପାଇଁ ଭୋକଟାକୁ ଲୁଚାଇ ହେଉନି··· ଆଉ କିଛି ଦିନ ଗଲେ ଅଭ୍ୟାସରେ ପଡ଼ିଯିବ ଯେ···ଭୋକ ଅବଶ୍ୟ ହେବ କିଛି ଦିନ ପାଇଁ...ଜାଣନ୍ତି ଡ଼ାକ୍ତର ବସୁ କହୁଥିଲେ······

ଶକ୍ତା ॥ କ'ଣ କହୁଥିଲେ ଆପଣଙ୍କର ଡ଼ାକ୍ତର ବସୁ ?

ମୁକ୍ତିକାନ୍ତ ॥ ଡ଼ାକ୍ତର ବସୁ କହୁଥିଲେ ସମାଜରେ ବଞ୍ଚି ରହିବା ପାଇଁ ହେଲେ ଭୋକ ଲୁଚାଇବାକୁ ପଡ଼େ । (ହଠାତ୍ ଶକ୍ତାର

॥ ଛତଭଙ୍ଗି ॥

ମୁହଁକୁ ଚାହିଁ) ଆପଣଙ୍କୁ ଦେଖିଲେ କ'ଣ ମନ ହେଉଛି ଜାଣନ୍ତି...?

ରକ୍ତା ॥ (ଅସହାୟ ଭାବରେ ହସିବାକୁ ଚେଷ୍ଟା କରୁଛି)

ମୁକ୍ତିକାନ୍ତ ॥ ଆପଣ ଯେମିତି ଖୁବ୍ ଦୁଃଖୀ । ସବୁଥାଇ ଯେପରି ଆପଣଙ୍କର କିଛି ନାହିଁ ।

ରକ୍ତା ॥ ମିଛ କଥା । ଆପଣ କେମିତି ଜାଣିଲେ ?

ମୁକ୍ତିକାନ୍ତ ॥ ମିଛ ! ମିଛ କ'ଣ ମୁଁ ଜାଣେନା । ଜାଣନ୍ତି, ଡା. ବସୁ ମିଛ କହିବା ପାଇଁ ମନା କରିଛନ୍ତି । ମୁଁ କିନ୍ତୁ ଅନେକ କଥା ଜାଣିପାରେ, ଅବଶ୍ୟ ମୋର ଟିକିଏ ଅପରିଣତ ମସ୍ତିଷ୍କ ।

ରକ୍ତା ॥ ଆପଣଙ୍କର କାହିଁକି ଅପରିଣତ ମସ୍ତିଷ୍କ ହେବ ? ମୁଁ ଦେଖୁଛି, ଆପଣ ଖୁବ୍ ସହଜ, ସରଳ ।

ମୁକ୍ତିକାନ୍ତ ॥ (ମନକୁ ମନ) ଖୁବ୍ ସହଜ ଓ ସରଳ ! ହଁ—ହଁ—ହଁ (କିଛି ସମୟ ମୁଗ୍ଧ ହୋଇ ରକ୍ତା ମୁହଁକୁ ଚାହିଁଛି) (ତା ପରେ ଆଖି ତଳକୁ ନଇଁ ଆସୁଛି) କିନ୍ତୁ ଏମିତି କଥା ଯେ, ମୁଁ କେବେ ଶୁଣୁନ (ବୋକାଙ୍କ ଭଳି ହସି) ଏତେ ଅଦ୍ଭୁତ ଚିନ୍ତା ଯେ, ମୋ ମୁଣ୍ଡକୁ କାହିଁକି ଆସେ ? ଜୀବନଟା ଖୁବ୍ ଆଶ୍ଚର୍ଯ୍ୟ...(ମଞ୍ଚରେ ଆଲୁଅ ଲାଲ ହୋଇ ଆସିଛି । ନାଲି ଆଲୁଅରେ ରେଖାଟିଏ ଆସି ପଡ଼ୁଛି ରକ୍ତା ଉପରେ କ୍ରମେ କ୍ରମେ ଅନ୍ତରାଳରୁ ଶୁଭୁଛି ତପନ ବର୍ମାର ସ୍ୱର)

ତପନ ॥ (ମଦ୍ୟପ ଗଳାରେ ଅନ୍ତରାଳରୁ କହୁଛି) ବାଷ୍ଟାର୍ଡ୍‌ସ୍ ! ମୁଁ ତମମାନଙ୍କ ଉପରେ ପ୍ରତିଶୋଧ ନେବି । ରକ୍ତା ସାଙ୍ଗରେ ମତେ ବାହା କରେଇ ତମେ ସବୁ ମୋ ଜୀବନଟାକୁ ନଷ୍ଟ କରି ଦେଇଛ । ମୁଁ ଆହୁରି ପିଇବି । ଏ କାଳଜାଠା

ପୋଡଗଲା ପର୍ଯ୍ୟନ୍ତ । ତା’ ପରେ ‘ହାଗ୍‌କର’···(ନିଜ ଗୁଣ୍ଡରେ ପିସ୍ତଲକୁ ରଖି ଟ୍ରିଗାର ଚପିଲେ···ଭକ୍ତା ଧୀରେ ପଦକ୍ଷେପରେ ଚପନର ପ୍ରଳାପ ଶୁଭୁଥିବା ଅବସ୍ଥାରେ ଘର ଭିତରକୁ ଚାଲିଯାଇଛି । ମଞ୍ଚ ପୁଣି ଆଲୋକିତ ହୋଇଛି । ଶିଖା ଜଳଖିଆ ନେଇ ଆସିଛି । ମୁକ୍ତିକାନ୍ତ ପଛକୁ ଫେରି ଦେଖିନ୍ତି ଭକ୍ତା ବଦଳରେ ଶିଖାକୁ । ହଠାତ୍ ନର୍ଭସ୍ ହୋଇ ଛେପ ଢୋକ ପକାଉଛି)

ମୁକ୍ତିକାନ୍ତ ॥ ଆପଣଙ୍କ ଭାଉଜ···ମାନେ ଏଇଠୁ କେତେବେଳେ...

ଶିଖା ॥ ଭାଉଜ ଟେଷ୍ଟେଇ ଘରକୁ ଗଲେ ।

ମୁକ୍ତିକାନ୍ତ ॥ ଓଃ ! ତେବେ ଏତେବେଳ ଯାଏ, ମୁଁ କାହା ସଙ୍ଗେ କଥାବାର୍ତ୍ତା କରୁଥିଲି ?

ଶିଖା ॥ (ଜଳଖିଆ ପ୍ଲେଟ ରଖି ହସ ଚାପି କହୁଛି) କଥାବାର୍ତ୍ତା କରୁଥିଲେ ?

ମୁକ୍ତିକାନ୍ତ ॥ ହଁ, ମୁଁ କିଛି ବୁଝିପାରୁନି । ଆଖି ଖୋଲିଲେ ଦେଖି ହଠାତ ଯଦି ମୋ ଡେଣାରେ ଦୁଇଟା ପର ଲାଗି ଯାଆନ୍ତା···ମୁଁ ଉଡ଼ି ଉଡ଼ି ଚାଲି ବରଗଛ ଡେଇଁ, ତାଳଗଛ ଡେଇଁ, ସେ ପାହାଡ଼ ଉପରକୁ···ନା, ପାହାଡ ଉପରକୁ କାହିଁକି ଯିବି ?

ଶିଖା ॥ ଏ’ କଣ ? ଡାକ୍ତର ବସୁଙ୍କ ସାଙ୍ଗରେ ପୁଣି କଥାବାର୍ତ୍ତା ଆରମ୍ଭ ହୋଇଗଲା ? ବସନ୍ତୁ ଆପଣ । ଖୁବ୍ ବେଶି ଭାବୁଛନ୍ତି ।

ମୁକ୍ତିକାନ୍ତ ॥ (ବାଧ୍ୟ ଶିଶୁ ଭଳି ବସି) ବୁଝିଲି । ମୁଁ କଥା କହୁଥିଲି ବେଳେ ଆପଣଙ୍କ ଭାଉଜ ତା ହେଲେ କେତେବେଳେ ଉଠି ଚାଲି ଯାଇଛନ୍ତି (ଭାବୁଛି)

ଶିଖା ॥ କଣ ଏତେ ଭାବୁଛନ୍ତି ଯେ ? ଆପଣଙ୍କୁ ପରା ଭୋକ ହେଉଥିଲା ।

ମୁକ୍ତକାନ୍ତ ॥ ଘବୁଥିଲି ଜଣଙ୍କ ଜାଗାରେ ଆଉ ଜଣେ କୁଆଡ଼ୁ ଆସିଲେ ।

ଶିଖା ॥ ଖାଆନ୍ତୁ । ଖାଆନ୍ତୁ ।

ମୁକ୍ତକାନ୍ତ ॥ (ବାଧ୍ୟ ଶିଶୁଭଳି ଖାଇଛନ୍ତି ଜୋରରେ) (ମୁହଁକୁ ଗୁହିଁ ରହି) ଆଜ ଯେମିତି ମନେ ହେଉଛି···ମାନେ ମୁଁ ଠିକ୍ କହିପାରୁନି···ମତେ ଖୁବ୍ ଭଲ ଲାଗୁଛି । ଆପଣ-ମାନେ ଖୁବ୍ ଭଲ ମଣିଷ...ମାନେ ଜୀବନଟାକୁ ମୁଁ ତ ଯେମିତି କରୁଛି ଦେଖିନି···ତେବେ···(ହଠାତ୍ ଯେମିତି କରୁଛି ମନେ ପଡ଼ିଯାଇଛି) ଜାଣନ୍ତି ସେଦିନ କ'ଣ ହେଲା ?

ଶିଖା ॥ କେଉଁ ଦିନ ?

ମୁକ୍ତକାନ୍ତ ॥ ସେ ଦିନ ·· ସେଠି...ଆମ Hospitalରେ । ଡାକ୍ତର ବସୁଙ୍କ ଅନୁମତି ନେଇ ମୁଁ ସେଦିନ ଜଙ୍ଗଲ ଆଡ଼େ ବୁଲି ଯାଇଥିଲି । ବୁଢ଼ୀଟିଏ ସେଠି ଶୁଖିଲା ପତ୍ର ଗୋଟାଉ ଗୋଟାଉ ନ ଖାଇ ନ ପିଇ ଏମିତି ଭୋକରେ ବେହୋସ୍ ହୋଇ ପଡ଼ିଥିଲା । ମୁଁ ତାକୁ କୋଳ ଖାଇବାକୁ ଦେଲି । ଆଉ ତାକୁ କାନ୍ଧରେ ବସାଇ ତା' ଗାଁ ପାଖରେ ଆଣି ଛାଡ଼ିଦେଲି । କିନ୍ତୁ ବୁଢ଼ୀଟା ଯେତେବେଳେ ଜାଣିଲା ମୁଁ ପାଗଳାଗାରଦର ଲୋକ ବୋଲି, କାନ୍ଧରୁ ଡେଇଁ ପଡ଼ି ମୋ ଉପରକୁ ଢେଲା ଫୋପାଡ଼ିଲା । ଆପଣ ସେମିତି ଢେଲା ଫୋପାଡ଼ିବେନି ତ ?

ଶିଖା ॥ (ଶୂନ୍ୟଦୃଷ୍ଟିରେ ଗୁହିଁ ରହିଛି । ହଠାତ୍ ସଂବିତ୍ ପାଇ) ଚ୍ହ'ଟା ଥଣ୍ଡା ହୋଇଗଲା ।

ମୁକ୍ତକାନ୍ତ ॥ ଓଃ (ସବୁତ ପିଇଲା ଭଳି ପି; ଦେଇଛି)

ଶିଖା ॥ (ମଗ ଉଠାଇ) ଆଉ ଟିକିଏ ?

ମୁକ୍ତକାନ୍ତ ॥ (ଖୁସି ହୋଇ) ଆହୁରି ପିଇବ ? ଦିଅନ୍ତୁ ।

ଶିଖା ॥ (ଚ୍ହ' ଢାଳୁ ଢାଳୁ) ଚ୍ହ'ଟା ଆପଣଙ୍କର ଥଣ୍ଡା ହୋଇ ଯାଇଥିଲା ।

॥ ଛତିଶି ॥

ମୁକ୍ତିକାନ୍ତ ॥ ନା' ମୁଁ ଭାବୁଥିଲି—ମତେ ସେଦିନ ସେ ବୁଢ଼ୀଟା ତେଲ ଫୋପାଡ଼ିଲା କାହିଁକି ? ଏଥିପାଇଁ କ'ଣ ତେଲ ଖାଆନ୍ତି ।

ଶିଖା ॥ ଏଇ କଥା ଭାବି ଭାବି ଚା'ଟା ଥଣ୍ଡା ହୋଇଗଲା ?

ମୁକ୍ତିକାନ୍ତ ॥ ହଁ । ଆପଣଙ୍କୁ ହସ ଲାଗୁନି ?

ଶିଖା ॥ ହସ ।

ମୁକ୍ତିକାନ୍ତ ॥ ନା—ମାନେ···ମତେ ଦେଖି ସମସ୍ତେ ହସନ୍ତି କିନା···

ଶିଖା ॥ କାହିଁକି ? (ହସିଛି)

ମୁକ୍ତିକାନ୍ତ ॥ ଆପଣଙ୍କୁ କିନ୍ତୁ ହସଟା ଖୁବ୍ ମାନେ ।

ଶିଖା ॥ ହଁ, ଆପଣଙ୍କୁ । ଏମିତି ତ ଦେଖିବାକୁ ଆପଣ ବେଶ୍ ସୁନ୍ଦର । ହସିଲେ ଆହୁରି ସୁନ୍ଦର ଦିଶନ୍ତି । ମନେହୁଏ ଆପଣ ଯେମିତି···

ଶିଖା ॥ କେମିତି···? (ଧରିଁ ସଇଁ ହୋଇ ଯାଉଥିଲା ଶିଖା ଯେମିତି ଶ୍ୱାସରୁଦ୍ଧ ହୋଇଯିବ)

ମୁକ୍ତିକାନ୍ତ ॥ ମାନେ, ଯେମିତି...କଥାଗୁଡ଼ାକ ମୋ ପାଟିକୁ ଠିକ୍ ଆସେନି ତ···ମାନେ ଜଙ୍ଗଲ ଭିତରେ ଝରଣା ଦେଖିଛନ୍ତି । ମଧ୍ୟାହ୍ନ ଖରାବେଳେ ସେ ଝରଣା ପାଣି ଭିତରେ ଗଛର ଛାଇ ଦିଶେ...ପତ୍ର ଫାଙ୍କରୁ ଆକାଶ ଦିଶେ···ପାହାଡ଼ ଉପରର ଗୋଡ଼ି ମାଟି ସବୁ ଦିଶନ୍ତି...ମାଟି ମାଠିଆ ନେଇ ହସି ହସି ଆଦିବାସୀ ଝିଅମାନେ ଆସନ୍ତି···ଓଃ—ମାନେ, କ'ଣ ଯେ ମୁଁ କହୁଛି...

ଶିଖା ॥ ମୁଁ ସେଇ ଆଦିବାସୀ ଝିଅଙ୍କ ଭଳି ଦିଶେ ?

ମୁକ୍ତିକାନ୍ତ ॥ ନା, ମାନେ...ମୁଁ କହିପାରୁନି...ଆପଣ ହସିଲେ ମୋତେ ଲାଗେ···ମୁଁ ଯେମିତି ସେଇ ଝରଣାର ପାଣିରେ ମେଘର ଛାଇ ଦେଖୁଛି···ମାନେ ପାଣି ଭିତରେ ପୁରା ଆକାଶଟା···

॥ ସଇଁତରିଶି ॥

ଶିଖା ॥ ଆପଣ ବଡ଼ ଅଦ୍‌ଭୁତ ମୁକ୍ତିକାନ୍ତ ବାବୁ ! ମୁଁ ପାର୍ଟି ଯାଏ, ପିକ୍‌ନିକ୍ ଯାଏ, କଲେଜ ଡ୍ରାମାରେ ରୋଲ୍ କରେ··· ସେମାନେ କହନ୍ତି ମୁଁ ଖୁବ୍···

ମୁକ୍ତିକାନ୍ତ ॥ ଆପଣ ଖୁବ୍ ପବିତ୍ର ।

ଶିଖା ॥ ପବିତ୍ର । ପବିତ୍ର ବୋଲି ତ ମତେ କେହି ଆଜିଯାଏ କହି ନାହାନ୍ତି ।

ମୁକ୍ତିକାନ୍ତ ॥ ନା, ମୁଁ ସତ କହୁଛି—ଗାଁରେ ଯେଉଁ ଝିଅମାନେ ଗାଈ ଚରାଇବାକୁ ଆସନ୍ତି···ବିଲରେ ଧାନ କାଟନ୍ତି...ଅବଶ୍ୟ ସେମାନେ ସହରର ବଡ଼ ଲୋକ ନୁହନ୍ତି···ତଥାପି ସେମାନେ ହସିଲେ ଖୁବ୍ ପବିତ୍ର ଦେଖାଯାଏ । ମାନେ···ମୁଁ ଠିକ୍ କହିପାରୁନି...କିନ୍ତୁ ଆପଣ ମଧ୍ୟ ଠିକ୍ ସେମିତି ଦେଖାଯାଆନ୍ତି । (ମନକୁ ମନ ହସି ପକାଇ) କଥା କଣ କି ମଣିଷ ପବିତ୍ର ହେଲେ, ଏତେ ସୁନ୍ଦର ହସିପାରେ ।

ଶିଖା ॥ ହସିବା ଅର୍ଥ କ'ଣ ପବିତ୍ରତା ?

ମୁକ୍ତିକାନ୍ତ ॥ ନା, ନା, ହସିବା ଅର୍ଥ ମାନେ...ଡ଼ାକ୍ତର ବସୁ ଜଣେ ପବିତ୍ର ମଣିଷ । ଅଥଚ ସେ କେବେ ହସନ୍ତି ନାହିଁ । ଖୁବ୍ ଗମ୍ଭୀର ? ଆଚ୍ଛା ଆପଣଙ୍କର ଭାଇ ଜଣେ ଗମ୍ଭୀର ଲୋକ, ନାଇଁ ? କିନ୍ତୁ ତାଙ୍କୁ ଦେଖିଲେ ମୋତେ ଖୁବ୍ ଡ଼ର ଲାଗେ ।

ଶିଖା ॥ ମୋ ଭାଇ କ'ଣ ତାହା ହେଲେ ଅପବିତ୍ର (ରାଗିକି ଭଳି)

ମୁକ୍ତିକାନ୍ତ ॥ (ଖୁବ୍ ଡରିଯାଇ ଉଠିଯିବାକୁ ଉଦ୍ୟତ ହୋଇଛି)

ଶିଖା ॥ ଆରେ ଯାଉଛନ୍ତି କୁଆଡ଼େ ? ବସନ୍ତୁ ।

ମୁକ୍ତିକାନ୍ତ ॥ ନା ଆପଣ ମୋ ଉପରେ ରାଗି ଗଲେ ବୋଲି···ଡ଼ର ଲାଗିଲା । ଡ଼ାକ୍ତର ବସୁ କହୁଥିଲେ—ମଣିଷକୁ ଭଲ ପାଇବା ଯାହା, ଭଗବାନଙ୍କୁ···ମାନେ ମୁଁ ଠିକ୍ ବୁଝି-ପାରୁନି...ଭଲ ପାଇଲେ ଆଦୌ ରାଗି ହୁଏନା ।

ଶିଖା ॥ ଆପଣ ତାହାହେଲେ ସମସ୍ତଙ୍କୁ ଭଲ ପାଆନ୍ତ ?

ମୁକ୍ତିକାନ୍ତ ॥ ମୁଁ ? ନା, ନା, ମୁଁ କେମିତି ଜାଣିଲି ? ମୁଁ କଣ୍ଟ ବୁଝି-
ପାରେନ ।

ଶିଖା ॥ କଣ ବୁଝନ୍ତ ଆପଣ ?

ମୁକ୍ତିକାନ୍ତ ॥ ମୁଁ ବ କଣ ବୁଝେ—ତାହା ବୁଝିପାରେନ ।

ରଜ୍ଞା ॥ (ପ୍ରବେଶ କରି) ଆରେ ଆପଣ ସେତେବେଳୁ ଏଠି ?
ଏ ଯାଏଁ ଗାଧୋଇ ନାହାନ୍ତ ଯେ ? ସେପଟେ ଲଞ୍ଚ୍
ରେଡ଼ି ।

ମୁକ୍ତିକାନ୍ତ ॥ ଲଞ୍ଚ୍ ରେଡ଼ି ? ଓଃ, ହଁ ହଁ ବୁଝିଲି । ବର୍ତ୍ତମାନ ଯେଉଁଟା
ଖାଇଲି—ସେଟା ଜଳଖିଆ ହେବ । ବୁଝିଲି ଆମ
Hospitalରେ ଠିକ୍ ଏମିତି ହୁଏ । ମୁଁ କେଉଁ ପଟେ
ଯିବି ?

ଶିଖା ॥ ଆସନ୍ତୁ । ଆସ ଭାଉଜ । (ଶିଖା, ରଜ୍ଞା, ମୁକ୍ତିକାନ୍ତ
ଭିତରକୁ ଗଲେ)

(ମଞ୍ଚର ଆଲୋକ କ୍ରମେ ମ୍ଳାନ ହୋଇଛି । ପୁଣି କ୍ରମେ
ଆଲୋକିତ ହେବାବେଳକୁ କିଛି ଦିନ ପରର ଏକ
ସନ୍ଧ୍ୟା । କିଛି ପରିବା ନେଇ ହରିଆ ଦାଣ୍ଡପଟୁ ଆସିଛି ।
ପଛରୁ ଗଜେନ୍ଦ୍ର)

ଗଜେନ୍ଦ୍ର ॥ ହରିହର ବାବୁ···ଓ ହରିହର ବାବୁ...(ହରିଆ ନ ଶୁଣି
ଚାଲିଯିବାବେଳେ) ଆବେ ହରିଆ···

ହରିଆ ॥ ତମେ କେଡ଼େ ବେହିଆ ଲୋକ ଗୁମାସ୍ତା ବାବୁ । ଦାଣ୍ଡ
ମଝିଟାରେ ଇଜ୍ଜତ ସାରୁଛ ।

ଗଜେନ୍ଦ୍ର ॥ ଓହୋ, ଇଜ୍ଜତ । କଣ ଲାଜ ? ଲାଜରେ ଦିହଟା କୁଟୁକୁଟୁ
ହୋଇଯାଉଛି, ନା ଖୁଷଣ ହୋଇଯାଉଛି । କରେ ତତେ
॥

॥ ଅଟସ୍ଥଳଶି ॥

ମୁଁ ଅଧ ମାଇଲଏ ବାଟରୁ ଡ଼ାକୁଛି...ସ୍ବାହାପ ଜାଣି ଖାଁଠାଏ କରେ ?

ହରିଆ ॥ ତମକୁ କହି ଦେଉଚ୍ଛି ବାବୁ, ବାଟରେ, ଘାଟର ଏମିତି ମୋ ସାଙ୍ଗରେ ଲଗିବନି । ମତେ ବଡ଼ ଇଯ୍ୟେ ଲଗୁଛି ।

ଗଜେନ୍ଦ୍ର ॥ କଣ ଲାଗୁଛି ? ଖିଷଣ ? କଣ ମୁଣ୍ଡରେ ଗୋଟେ ଫୁଲ ଖୋସା ହୋଇଚ୍ଛି । ଆସିଲ, ଆସିଲୁ ପାଖକୁ ଆସିଲୁ ?

ହରିଆ ॥ (ପାଖକୁ ହସି କରି ଆସି) କେମିତି ଦିଶୁଚ ?

ଗଜେନ୍ଦ୍ର ॥ ଭଲ, ଭଲ । ତୁମରି ଏ କେଶଗୁଚ୍ଛ ଓ କନଅର ପୁଷ୍ପ ଆହା—ହା...ଖିଷଣ ଦିଶୁଚ । ଯାକୁ କହନ୍ତି 'ଲଖୋମେ ଏକ' ।

ହରିଆ ॥ ଭଲ ଦିଶୁଚଟି ହରିଆ ! ଦେଈ କହୁଥିଲେ ପଗ ।

ଗଜେନ୍ଦ୍ର ॥ ଦେଈ । ଓ·· ଶିଖା ଦେବୀ—ହଁ କାହିଁକି କହିବେନି ସିଏ ? ଶିଖା ଦେବୀ ଏ ଫୁଲଟି ଖୋସି ଦେଇଛନ୍ତି ।

ହରିଆ ॥ ମଲ ମୋର । ତାଙ୍କର କୋଉ ଗରଜ ପଡ଼ିଚ ଯେ ମୋତେ ଫୁଲ ଲଗେଇ ଦେବେ !

ଗଜେନ୍ଦ୍ର ॥ ସେ ଯାହାହେଉ । ତୁ ଆଜ ଯାହା ଦିଶୁଚୁନାରେ ହରିଆ । ମନଟା ମୋର ଖିଷଣ ଭାବରେ କେମିତି···(ଛୁଇଁ ଦେଇଚ୍ଛି ହରିଆକୁ)

ହରିଆ ॥ ଏଃ, ମଣିଷଟା ମୋତେ କାହିଁକି ଛୁଉଁଚ୍ଛି, ବା ତୁମେ ଗୁମାସ୍ତା ବାବୁ ଭାରି ଦୁଷ୍ଟ ।

ଗଜେନ୍ଦ୍ର ॥ ଦୁଷ୍ଟ···ଭଲ ଭଲ । ଏଣିକି ଗୋଟାଏ ଶାଢ଼ୀ ପିନ୍ଧ— ବୁଝିଲୁ ହରିଆ, ଭଗବାନ ଗଢୁ ଗଢ଼ୁ ଭୁଲ୍‌ରେ ତୋତେ ଗୋଟାଏ ପୁରୁଷ କରିଦେଲେ । ହଉ କୁଆଡେ ବାହାରିଲୁ ?

ହରିଆ ॥ ବଜାର ସଉଦା କରି ଆସୁଚ ।

॥ ଗୁଲଣି ॥

ଗଜେନ୍ଦ୍ର ॥ କେତେ ପଇସା ଅଣ୍ଟିକୁ ଆସିଲା ?

ହରିଆ ॥ ଗୁମାସ୍ତା ବାବୁ !!

ଗଜେନ୍ଦ୍ର ॥ ରାଗି ଯାଅନା ମ—ନେ—ବଡ ଖଣ୍ଡେ ନେ···

ହରିଆ ॥ ଥାଉ ବାବୁ ତମ ବଡ଼—ତମେ ମତେ କ'ଣ ବୋଲି ପାଇଲ କି ?

ଗଜେନ୍ଦ୍ର ॥ କରେ କ'ଣ ଖୁଷଣ ଖବରେ କହିଯାଉଛୁ । ତୁ କଣ ବଜାର ସଉଦାରୁ ପଇସା ମାରୁନୁ ? ଦେଖିବୁ ସବୁ ଗୁମର ଖୋଲି ଦେବି ଏଠି ।

ହରିଆ ॥ କହୁନା କାହାକୁ କହିବ—ମୁଁ କଣ କାହାକୁ ଡରେଚ । ମଲ୍ଲ ମୋର ଗଉଁ ।

ଗଜେନ୍ଦ୍ର ॥ କରେ କରେ କ'ଣ ମୋ ଆଗରେ ଖୁଷଣ ଖବରେ କଥା କହୁଛୁ ? ସେଦିନ ବାବୁଙ୍କ ସଉଦାରୁ କଦଳୀ ଖାଇନୁ ? ସତ କହ ପରିବା ପଇସା ବଞ୍ଚେଇ ପଚଶ ନୂଆ ପଇସାର ଚନାବାଦାମ ଖାଇନୁ ।

ହରିଆ ॥ ଖାଇଲି ତ ଖାଇଲି ତମର ସେଇଠୁ କ'ଣ ଗଲା ? ହୁଁ···

ଗଜେନ୍ଦ୍ର ॥ ହଁ ବାପ ହରିହର । ଏଇ ଥର ରାସ୍ତାକୁ ଆସ । ମୋର ସେଇଥିରେ କିଛି ନାହିଁ । ଏଇ ତପନ ବାବୁ ଇଂଜିନିୟର ପଇସା ଖାଇଲେ—ଆମ ବାବୁ କଣ୍ଟ୍ରାକ୍ଟର ହୋଇ ଲୁଟି ନେଲେ—ମଝିରେ ତମେ ଆମେ କାହିଁକି ଫାଙ୍କା ରହିଯିବ ? ଗୋଟିଏ କରାମତି ଦେଖେଇ ଦେଲୁ ।

ହରିଆ ॥ ତମେ ଗୁମାସ୍ତା ହୋଇ କଣ ସିମେଣ୍ଟ ଟ୍ରେର କରୁନା—ମତେ ବାବୁ ରଖେଇଦବନିଟି କହୁଛି । ରାଗିଗଲେ ମୁଁ କାହାର ନୁହେଁ ଟି ।

॥ ଏକାଙ୍କିକା ॥

ଗଜେନ୍ଦ୍ର ॥ ମୁଁ ସିମେଣ୍ଟ ଗେଟର କଲିକ ଶୋଷଣ କଲି, ସେଥିରେ ତୁ କହିବାବାଲା କିଏ ବେ ? ଆଉ ଦିନେ ସାହସ କରିବୁନି ବୁଝିଲୁ ? ଚାକଣ କଣ ପିତା ଲଗିଲାଣି ।

ହରିଆ ॥ ହଉ ତମ ହାତରେ ଯାହା ହେଉଛି କର । ମତେ ଏଠି ଅଟକାଇ ଏମିତି କହିବାକୁ ତମେ କିଏ ହୋ ? ତମେ ଗଲ ବାବୁ ମୋର ଢେର ହୋଇଗଲାଣି ।

ଗଜେନ୍ଦ୍ର ॥ ଟିକିଏ ରହିଯାଅ ହରିହର—ତମଠି ଗୋଟିଏ ଶୋଷଣ କାମ ଅଛି ।

ହରିଆ ॥ ତମର ସବୁ କାମ ଜଣାଗଲାଣି । ଉଠ-ଉଠ—ମୁଁ ଯାଏ ।

ଗଜେନ୍ଦ୍ର ॥ କାହିଁକି ? ମୋର କଣ ସେହି ଷମତା ନାହିଁ ? କରେ— ବାପା ମୋର ତୋ ଭଳି ପାଞ୍ଚ ପାଞ୍ଚଟା ଚାକର ରଖିଥିଲେ । ମୁଁ ଖାଲି ଟିକିଏ ଅଫିମ ଖାଏ ବୋଲି ଗୁମାସ୍ତାଗିରି କରୁଛି ସିନା—ନ ହେଲେ ଶୋଷଣ କରି ଦେଇଥାନ୍ତି । (ପକେଟରୁ ଟଙ୍କାଟିଏ ବାହାର କରି) ହଉ ନେ ନେ ଜଳଖିଆ ଖାଇବାକୁ ନେ—(ଟଙ୍କା ଦେଇଛି)

ହରିଆ ॥ (ଖୁସି ହୋଇ ଯାଇଛି) ସତେ ବାବୁ ପୁରା ଟଙ୍କାଟା ମତେ ଦେଇ ଦେବ ?

ଗଜେନ୍ଦ୍ର ॥ ଆରେ ନେ, ନେ—ପେରମରେ ଦେଉଛି । ହ କହୁଥିଲି କ'ଣ କି—ତମ ଦେଶି—ଦେଶିଙ୍କ କଥା କିଛି ଶୁଣିଛୁ ? ମାନେ ଏଇ ବାହାଘର କଥା—

ହରିଆ ॥ ଦେଶି ପରା କହୁଛନ୍ତି ସେ ବାହା ହେବେ ନାହିଁ ।

ଗଜେନ୍ଦ୍ର ॥ ବାହା ହେବେନି ? କାହିଁକି ? କ'ଣ ଶୋଷଣ କାଣ୍ଡ କିଛି ଘଟିଲା କିରେ ?

ହରିଆ ॥ ପାଠୋଇ ଝିଅ ବାବୁ । କେତେବେଳେ କୋଉ କଥା—କି ଝୁଙ୍କି ଉଠୁଛି । କିଏ କହିବ ?

॥ ବସ୍ବାଳଣି ॥

ଗଜେନ୍ଦ୍ର ॥ ତା ସତ । ତେବେ ହରିରେ ? କଲେଜ ଟୋକା କଏ ତମ ଘରକୁ ଆସୁଛନ୍ତି କହେ ?

ହରିଆ । କେତେ ବାବୁ ତ ଆସୁଛନ୍ତି—ହେଲେ ଆମ ଦେଈଙ୍କର ସେ ସବୁଙ୍କୁ କିଛି ବାରଣ ନାହିଁ ।

ଗଜେନ୍ଦ୍ର ॥ କି କଥା ହେ—ଆଜକାଲି ଯୁଗରେ ସେଥିରେ କଣ ଅଛି— କଏ କାହା ସଙ୍ଗରେ ଟିକଏ ବୁଲି ଯିବନି ତ କ'ଣ ସବୁବେଳେ ଘର କୋଣରେ ପଡ଼ି ରହିଥିବ ? ଆଚ୍ଛା ବାବୁ ହରିହର ! ତୁମ ଦେଈଙ୍କ ପାଖକୁ କିଏ ଆସୁଥିବ ?

ହରିଆ ॥ ହଁ ଆସେ ବେଳେବେଳେ—

ଗଜେନ୍ଦ୍ର ॥ ଆସେଟି ? ସେଇ କଥା । ବୁଝିଲୁ ? ଗଜେନ୍ଦ୍ର ଗୁମାସ୍ତା କିଛି ଅନୁମାନ କରେନି—କିନ୍ତୁ ··· ଯେଉଁ ଟିକକରେ ଭୀଷଣ ଭବେ—

ହରିଆ ॥ ତମେ କାହିଁକି ଦେଈଙ୍କ ବିଷୟରେ ଏତେ ପଚାରୁଛ କହିଲ ? ସେପଟେ ତମ ଶ୍ରୀକାନ୍ତ ବାବୁଙ୍କୁ କୁଆଡ଼େ ବାହା ହେବେ ।

ଗଜେନ୍ଦ୍ର ॥ କଏ କହିଲା ? ଦେଈ ?

ହରିଆ ॥ ନାଁ, ମ, ଦେଈ ତ ମନା କରୁଥିଲେ । କିନ୍ତୁ ଘରେ ତ ସମସ୍ତଙ୍କର ମନ ଅଛି ।

ଗଜେନ୍ଦ୍ର ॥ କି କଥା ଇଏ—ମନେ ରହିବନି, ଏଁ ! ଶ୍ରୀକାନ୍ତ ବାବୁଙ୍କର କ'ଣ ଅଭାବ ? କେଉଁ ଗୁଣରେ ସେ କମ୍ ହେବେ ? କୋଠା, ବାଡ଼ି, ଜମି, ବ୍ୟବସାୟ ଭୀଷଣ ଅଛି । ଆଜକାଲି ଯୁଗରେ ଏମିତି ସବୁ ଗୁଣ ଏକାଠି ମିଳିବା ମୁସ୍କିଲ । ବୁଝିଲ ହରିହର ବାବୁ ଆମର ତମ ଦେଈଙ୍କୁ ଖୁବ୍ ସୁଖ ପାଆନ୍ତେ ।

ହରିଆ ॥ (ତାକୁ ଲାଜ ମାଡୁଛି)—ସତେ ସତେ ?

॥ ଚେଯ୍ୟାଲଶି ॥

ଗଜେନ୍ଦ୍ର ॥ ସମସ୍ତ ସୁଯୋଗ ମିଳିଲେ କଥାଟା ଖୁଷଣ ଭାବରେ··· କହିବୁ ତମ ବାବୁଙ୍କ ଆଗରେ । କ'ଣ ବୁଝିଲୁଟି······

ହରିଆ ॥ କିନ୍ତୁ ସେ ଯେମିତି ରାଗି ମଣିଷନା—କାଳେ କେଉଁଠି କଥା ଖସିଗଲେ ମାରି ଛେଚ୍ଚି କରି ଦେବେ ।

ଗଜେନ୍ଦ୍ର ॥ ଧେତ୍ ମାଇଚଆଟା—କଥାଟା ବନେଇ ଚନ୍ଦେଇ ଖୁଷଣ ଭାବରେ କହିବୁ ପରା—ଦେଖ—ଏଇ ଗୋଟିଏ କାମ କରି ଦେଲେ ଆଦ୍ଧର ମିଳିବ ।

ହରିଆ ॥ (ଖୁସି ହୋଇ ଯାଇଛି)—ଆଚ୍ଛା ତା ହେଲେ ନିଶ୍ଚେ କହିବ ।

ଗଜେନ୍ଦ୍ର ॥ ମୁଁ ସେଇଆ ଭାବୁଥିଲି । ହରିହର ବାବୁଙ୍କ କାମଟା କିଛି ବନେଇ ପଡ଼ିବନି । ଆଚ୍ଛା ବାବୁ ହରିହର ! ତମ ବାହା-ଘରଟା କେବେ ହେଉଛି ?

ହରିଆ ॥ (ଲାଜରେ ଝାଉଁଳି ପଡ଼ୁଛି) ଛି, ସେ କଥା କହନା ଗୁମାସ୍ତା ବାବୁ । ମୋ ଗୁଣ୍ଡଟା କେମିତି କେମିତି ହେଉଛି ।

ଗଜେନ୍ଦ୍ର ॥ ଆଉ ଲାଜ ବ ମାଡ଼ୁଥିବ । ଧେତ୍ ତେଶ୍ରୀ । ହଉ ଯା— କଥାଟା ମନେ ରହିଲାଟି ?

ହରିଆ ॥ ହଁ, ବାବୁ କହିବ ।

ଗଜେନ୍ଦ୍ର ॥ ଶୁଣ ଆଉ ଗୋଟିଏ କଥା—ଦରକାର ପଡ଼ିଲେ କହିବୁ ଶ୍ରୀକାନ୍ତ ବାବୁ ଲକ୍ଷେ ପର୍ଯ୍ୟନ୍ତ ଟଙ୍କା ଦେବାକୁ ପ୍ରସ୍ତୁତ ଅଛନ୍ତି ।

ହରିଆ ॥ ଲକ୍ଷେ ଟଙ୍କା ଦେବେ ?

ଗଜେନ୍ଦ୍ର ॥ ଆରେ ବାବୁ । ସେ ସବୁ କୋଟିପତି ମଣିଷ—ମନ ହେଲା ତ ସ୍ୱରଗରୁ ଚାନ୍ଦ ଆସିବ । କୋଉଠି ସିନା ଝିଅ ପକ୍ଷକୁ ଯୌତୁକ ଦେବାକୁ ହୁଏ, ଏଠି ବରପକ୍ଷ ଟଙ୍କା ଦେଇ ବାହା ହେବାକୁ ମନ କରିଛନ୍ତି । ଆରେ କେତେ ଜଣଙ୍କ ଭାଗ୍ୟରେ ଏକଥା ଜୁଟେ ?

॥ ଚଉସଳଣି ॥

ହରିଆ ॥ ମୁଁ ଯାଉଛି ।

ଗଜେନ୍ଦ୍ର ॥ ଯିବ—ହେଉ ଯାଅ । ମା'ଙ୍କୁ ଟିକେ ଡାକି ଦେବ ।
(ଶକ୍ତାର ପ୍ରବେଶ)

ଶକ୍ତା ॥ ତମେ ନେଉଳ ବାବାଙ୍କ ପାଖକୁ ଯାଇଥିଲ ଗୁମାସ୍ତାଏ ?

ଗଜେନ୍ଦ୍ର ॥ ଯାଇଥିଲି ମାନେ ? ଆପଣଙ୍କଠୁ ଟଙ୍କା ନେଇ ସେଇ ଯୋଉ ଗଲି···ଏକବାରେ ଗଲି···ଯାଇ ସିଧା ନେଉଳ ବାବାଙ୍କ ପାଖରେ ପହଞ୍ଚିଲି ।

ଶକ୍ତା ॥ (ଆଗ୍ରହରେ) ବାବା କ'ଣ କହିଲେ ?

ଗଜେନ୍ଦ୍ର ॥ ଶନି, ଭୀଷଣ ଶନି ପଡ଼ିଛି, ସେଇଠୁ ମୁଁ ତ କହିଲି ମା' ତ ସବୁ ଛାଡ଼ି ଆପଣଙ୍କ ଉପରେ ଭରସା କଲେ । ଆପଣ କହିଲ ପ୍ରକାରେ ଏଇ ଟଙ୍କା ପଚିଶଟି ପଠାଇଛନ୍ତି । ସେଇଠୁ ବାବା ଯଥାଶକ୍ତି ଧ୍ୟାନ କରି, ବିଶ୍ୱନାଥ ମହାପ୍ରଭୁଙ୍କ ପାଖେ ଧୂନିଟା ଲଗେଇ, ଧ୍ୟାନରେ ବସି ପଡ଼ିଲେ । କ'ଣ କହିବି ମା' ଆଖି ଦୁଇଟା ନାଲ୍ ହୋଇ ଲାଗୁଥାଏ ଯେମିତି ମୁହଁ ଭିତରୁ ବାହାରି ଆସିବ । ଓଃ କି ଭୀଷଣ ଜ୍ୟୋତି । ସେଇଠୁ ଆଜ୍ଞା ତିନିଟା ବେଲପତ୍ର ବିଶ୍ୱନାଥଙ୍କ ମୁଣ୍ଡ ଉପରୁ ଖସି ପଡ଼ିଲା । ବାବା କହିଲେ ଆଜି ତିନି ମାସ ଅଛି ।

ଶକ୍ତା ॥ ଆଜି ତିନିଟା ମାସ ଗଲେ ସବୁ ଶନି କଟିଯିବ ?

ଗଜେନ୍ଦ୍ର ॥ ଶନିଟି ? ନେଉଳ ବାବାଙ୍କ ସାଧନାରେ ଦୌଡ଼ି ପଳେଇବ । ବାବୁଙ୍କୁ କାନରେ ଗଣ୍ଠି ପକେଇ ହେବ—ହେବ—ହେବ—ଏଇ ଢେଉଁରିଆଟା ହାତରେ ବାନ୍ଧି ଦେବେ ।

ଶକ୍ତା ॥ (ଢେଉଁରିଆଟି ନେଇ ନେଇ) ମୋ ଲାଗି ଅନେକ କଷ୍ଟ କଲ ଗୁମାସ୍ତାଏ ।

ଗଜେନ୍ଦ୍ର ॥ ଗଜେନ୍ଦ୍ର ଗୁମାସ୍ତା ତ ଏଥିପାଇଁ ବଞ୍ଚିତ ଆଜ୍ଞା, ଏଇଥି ପାଇଁ ନଳିଆ ବୋଉ ସାଙ୍ଗରେ କଣ କମ୍ ମୁହଁ ଫଟାଫଟି ? ଖୁବ୍‌ଶ ବୋଲି ଜାଣନ୍ତୁ । କହିବ ପର ପାଇଁ ଏତେ ଖଟିବା କ'ଣ ଦରକାର । କିଏ ତମକୁ ଏମିତି ପାଟ ଶାଢ଼ୀ ପିନ୍ଧେଇ ଦେବ । ହେଲେ ମା' କଣ ଚଳୁଛି ? କାହା ଝିଅ ମାଟ୍ରିକ ପରୀକ୍ଷା ଦେଇଛି···ପରୀକ୍ଷାରେ ଖୁବ୍‌ଶ ଖରାପ କରିଛି—ଭାଇମାନେ ଆସି ଗଜ ଗୁମାସ୍ତା ଦୁଆରେ ପହଞ୍ଚିବେ । କାହା ଘରେ ଖୁବ୍‌ଶ ବେମାର । ଦରକାରୀ ଔଷଧଟା ମିଳୁନି । ଆମ ପାଖରେ ଆସି ପହଞ୍ଚିବ । ସେଠୁ ଗଜ ଗୁମାସ୍ତା ବାରଗଳି ଡେର କରି ବୁଲି ଔଷଧଟା ଆଣି ପହଞ୍ଚିଲା ବେଳକୁ ସମସ୍ତେ କହିବେ "ଗଜ ଗୁମାସ୍ତାକୁ କୋଉ କଳା ବଜାରଟା ନ ଜଣା ?" ଇଏତ ଆଜ୍ଞା ଆପଣଙ୍କ ଆପଣଙ୍କର ଲୋକମାନେ ।

ରକ୍ତା ॥ ତମେ ଏଇଠି ମୋ କାମରେ ବ୍ୟସ୍ତ । ଆଉ ସିଆଡ଼େ ଶ୍ରୀକାନ୍ତ ବାବୁ ତମ ଉପରେ ବିଗୁଡ଼ୁ ଥିବେ ।

ଗଜେନ୍ଦ୍ର ॥ ଆପଣଙ୍କ କାମଟି ? ବର୍ମା ସାହେବଙ୍କ ଘର କାମ ଇଏ । ଶ୍ରୀକାନ୍ତ ବାବୁଙ୍କର ଏଇ ଘର ସଙ୍ଗରେ କି ଖୁବ୍‌ଶ ସମ୍ପର୍କ । ଆପଣମାନେ କୁଆଡ଼େ ଗୋଟାଏ ପ୍ରଜାପତି ସମ୍ବନ୍ଧ କରୁଛନ୍ତି ବୋଲି ଆମେ ଭିତରିଆ ଖବର ପାଇଚୁ । କ'ଣ ମା' ଭୋଜିବେଳେ ଆମକୁ ଯେମିତି ଭୁଲି ନ ଯାନ୍ତୁ !

ରକ୍ତା ॥ (ଈଷତ୍ ହସି) ଶିଖାର ବାହାଘର କଥା କହୁଚଟି ଗୁମାସ୍ତାଏ ? ସବୁ ବାବାଙ୍କ କରୁଣା ! ତମେ ଭାବୁଚ ଶିଖା ବାହା ହେବା ପାଇଁ ରାଜି ହେବ ? କେଜାଣି !

ଗଜେନ୍ଦ୍ର ॥ ସବୁ ତ ଆପଣଙ୍କ ଉପରେ ରହିଲା ମାଆ; ଦେଖନ୍ତୁ କ'ଣ ଏ ଖଣ୍ଡମଣ୍ଡଳରେ ଆଉ କାହା କଥା ଶୁଣିବେ କି ? ସିଏ କ'ଣ କମ୍ ଖୁବ୍‌ଶ ଜନ୍ତୁ ? ଆପଣ ଟିକିଏ ବୁଝେଇ ଦେଲେ କାମଟା ହୋଇଯିବ ବୋଲି ଜାଣନ୍ତୁ ।

॥ ଛବ୍ଯାଳଶି ॥

ଶକ୍ତା ॥ ସ୍ୱାଙ୍କ କଥା ତ ଦେଖୁଚ, ଜାଣୁଚ ଗୁମାସ୍ତାଏ, ଘର କଥା ବୁଝିବା ପାଇଁ ଆଦୌ ପ୍ରସ୍ତୁତ ନୁହଁନ୍ତି । ତାଙ୍କର କ୍ଲବ୍ ଭଲ ତ ସିଏ ଭଲ । ଏଥିରେ ଆଉ କ'ଣ ହେବ କହୁନ ?

ଗଜେନ୍ଦ୍ର ॥ ଆପଣ ଉଡ଼ଁରଆଟା ପିନ୍ଧୁଚନା ଆଗେ । ସବୁ ଖ୍ୟାପଣ ଠିକ୍ ହୋଇ ଯିବେ । ଜାଣିଲ ମା' ଆମ ଶ୍ରୀକାନ୍ତ ବାବୁ ତ ଶିଖା ଦେଈଙ୍କ ପାଇ ଏକଦମ୍, ମାନେ ଖ୍ୟାପଣ ପାଗଲ୍ ପରି ଜଣାପଡ଼ୁଛନ୍ତି । କିନ୍ତୁ ଯୌତୁକ ଦେବାକୁ ପଡ଼ିବ ନାହିଁ ।

ଶକ୍ତା ॥ କିନ୍ତୁ ଶିଖାର ତ ଗୋଟେ ବ୍ୟକ୍ତିଗତ ମତାମତ ଅଛି । ମୁଁ ଚାହୁଁନି ସିଏ ମୋର ପରି ଏମିତି ସଢ଼ି ସଢ଼ି ନ ମରନ୍ତୁ । ସମସ୍ତେ ତ ଆଉ ମୋ ଭଳି ଏମିତି···(କାନ୍ଦି ପକେଇଚି)

ଗଜେନ୍ଦ୍ର ॥ କି କଥା କହୁଛନ୍ତି ଆଜ୍ଞା ? ଇଏ ମୁଁ ଯାହା ଦେଖିଲିଣି ଖ୍ୟାପଣ କାରବାର । ହଇହେ, ନେଳିକୁ ପରୁର ମଙ୍ଗଳବାର ଜରିବା ନ୍ୟାୟ । ମୁଁ ଯାହା ଦେଖୁଚି ଏଥିରେ ମତାମତ ପଚ୍ଛରିବାର କ'ଣ ଏତେ ବଡ଼ ଖ୍ୟାପଣ କାରବାରଟା ଅଛି ? ଅସଲ କଥା, ଯୌତୁକ ପଡ଼ୁନି । ପଡ଼ୁନି କ'ଣ ଶ୍ରୀକାନ୍ତବାବୁଙ୍କୁ ଯଦି ଆଜ୍ଞା ଆଉ ଟିକିଏ ଖ୍ୟାପଣ ଘଟିବ ପାଗଲ୍ କରେଇ ଦିଆଯାଇ ପାରନ୍ତା ତା ହେଲେ ତ ସିଏ ବୋଧହୁଏ ତମକୁ କିଛି (ମୁଦ୍ରା ଦେଇ) ମାଲ୍ ଯୋଗାଇ ଝିଅକୁ ନେଇଯିବେ ।

ଶକ୍ତା ॥ ତମେ ଏତେ କିସ୍ୱି ହଉଚ ଗୁମାସ୍ତାଏ, ଶ୍ରୀକାନ୍ତ ବାବୁଙ୍କୁ କିସ୍ୱି ପ୍ରସ୍ତାବଟା ପକାଉନ କାହିଁକି ?

ଗଜେନ୍ଦ୍ର ॥ ଆହା, ସବୁ ପରା ସେଇଁଠି ଅଟକି ଯାଉଚି ମା' ଦେଈଙ୍କର ରାଜି ନ ଥିଲେ ପ୍ରଜାପତି ବନ୍ଧନଟା ଟାଣୁଆ ହବନି, ମାନେ ଖ୍ୟାପଣ ଘଟିବେ ।

ଶକ୍ତା ॥ ହଉ, ତମେ ଯାଅ ଗୁମାସ୍ତାଏ, ଅନେକ ବେଳରୁ ଏଇଠି ଅଟକି ଗଲଣି ।

॥ ସତତ୍ୱକଣି ॥

ଗଜେନ୍ଦ୍ର ॥ (ହଠାତ୍ ଚର ଚର ହେଲାପରେ) ହଁ, ଆଜ୍ଞା ଯାଉଚି । ଆଜ ନଳଆ ବୋଉ ପୋଡ଼ ଖୁଣ୍ଟାଟିକୁ ଅତି ଯତ୍ନ ସହକାରେ ସାଇତି ରଖି ଗୋଟାଏ ଖ୍ରୁଷ୍ଟଙ୍କ ଚେଙ୍ଗା ଦେବ । (ଘଡି ଦେଖି) ଆସି ଦୁଇଟା ବାଜିଲାଣି ? ବାବୁ ଆସି ନାହାନ୍ତି ଏ ପର୍ଯ୍ୟନ୍ତ ?

ରକ୍ତା ॥ ଏ ପର୍ଯ୍ୟନ୍ତ ଆସିବା ସମୟ ହୋଇନ । ଦିନରେ ଆଜକାଲି ତିନଟାରେ ଫେରୁଛନ୍ତି । ସେ ଅଫିସରେ କେତେ କାମ ହୁଏ କେଜାଣି !

ଗଜେନ୍ଦ୍ର ॥ ନାଇଁ ମା—ବାବୁ ଆସିବା ସମୟ ହୋଇଗଲାଣି । ମୁଁ ଯାଉଚି । (ତପନର ଗାଡ଼ି ହର୍ଣ୍ଣ ଶୁଭୁଚି । ଗଜେନ୍ଦ୍ର ବାହାରକୁ ଯାଇଚି । ରକ୍ତା ଘର ଭିତରକୁ । ଟେଲିଫୋନ୍ ବାଜି ଉଠିଛି । ଏବଂ ଘର ଭିତରକୁ ପଶି ଆସିଛନ୍ତି ତପନ ବର୍ମା । ଟେଲିଫୋନ ଧରି କଥାବାର୍ତ୍ତା କଲେ)

ହାଲୋ ! (ଢିଅ କଣ୍ଠ)

ତପନ ବର୍ମା ହୁଅର ! ପ୍ଲେସ୍ ହାଏ ଡ଼ାର୍ଲିଂ,

Sweet Sweet Kisses.

ଏଇ ତ ଫେରୁଛି । ତମେ ? କୋଉଠି ? ଘରେ ପହଞ୍ଚି ଗଲଣି ?

ବାଃ, ଏଁ ? ହଁ Sure, ମୁଁ ଯିବନି ତ ଆଉ ଯିବ କିଏ ଡ଼ାର୍ଲିଂ ?

(ଠିକ୍ ଏତିକବେଳେ ରକ୍ତା ହାତରେ ଥାଳି ନେଇ)

(ଯାଉଥିବା ଅବସ୍ଥାରୁ ଫେରିଛି ଏବଂ Darling ଇତ୍ୟାଦି ଫୋନ ଉପରେ ଶୁଣି ସିଡ଼ି ପାଖରେ ଲୁଚି ଯାଇଚି . ଓ ଶୁଣିଛି)

କଣ କହିଲ ? Oh Presentation ? ଯାହା ରୁଚିବ ।

॥ ଅଠରୁକଶି ॥

Yes, Hallow ଆଭ୍ର-ଆଭ୍ର ଯାହା ଗ୍ଭହିଁବ...ହାରର ?
Necklace definitely, Yes, ଠିକ୍ ଅଠଟା, OKay !

(ତପନ ଫୋନ୍ ରଖି ଗ୍ଭହିଁଲ ବେଳକୁ ଶକ୍ତାକୁ ଦେଖି ଅପ୍ରସ୍ତୁତ ହୋଇଯାଇଛନ୍ତି)

ଶକ୍ତା ॥ କାହା ସଙ୍ଗରେ କଥାବାର୍ତ୍ତା କରୁଥିଲକ ?

ତପନ ॥ ସେ କୈଫିୟତଟା ମୁଁ ତମକୁ ଦେବାପାଇଁ ବାଧ୍ୟ ନୁହେଁ ।

ଶକ୍ତା ॥ କେବେ ତ ତୁମଠାରୁ କୌଣସି କୈଫିୟତ ଗ୍ଭହିଁନ, ତେବେ ଏମିତି ପଚାରି ଦେଲି ବୋଲି କଣ ଅପରାଧ ହେଲା ?

ତପନ ॥ ଶକ୍ତା, ସବୁବାର ଗୋଟାଏ ସୀମା ଅଛି ।

ଶକ୍ତା ॥ ସମସ୍ତଙ୍କର ନା ଖାଲି ଏକା ତମର ?

ତପନ ॥ କାଇଁକି ? ତମର ଦୁଃଖ କଣ ? କୋଉ ଅଭାବଟା ତୁମର ପୂରଣ ନ ହୋଇଚି ଯେ ?

ଶକ୍ତା ॥ କାହା ସଙ୍ଗରେ କଥାବାର୍ତ୍ତା କରୁଥିଲ ବୋଲି ପଚାରି ଦେଲେ ଏମିତି ମହାଭାରତ ଅଶୁଦ୍ଧ ହେଇଯାଇଚି ।

ତପନ ॥ ହଁ, ମୋର ବ୍ୟକ୍ତିଗତ ବ୍ୟାପାରରେ କାହାର ଅଯଥା ଆଗ୍ରହ ମୁଁ ସହ୍ୟ କରି ପାରେନା ।

ଶକ୍ତା ॥ କିନ୍ତୁ ମୁଁ ଜାଣିବାକୁ ଗ୍ଭହେଁ 'ଆଭ୍ର' ଟି ଅଟି କିଏ ? କାହାକୁ ତମେ ହୀରାର ନେକ୍‌ଲେସ୍ ଉପହାର ଦେଉଚ ?

ତପନ ॥ ଇସ୍ ଶକ୍ତା !! ତମେ ଲୁଚି ଲୁଚି ଏ ପର୍ଯ୍ୟନ୍ତ ମୋ କଥାବାର୍ତ୍ତା ଶୁଣୁଥିଲ ? ତମକୁ...ମାନେ...(ଘୃଣାରେ) କ'ଣ କୁହାଯାଇପାରେ ?

ଶକ୍ତା ॥ ନା, ଲୁଚି ଲୁଚି ଶୁଣିବାରେ ମୋର ଆଗ୍ରହ ନାହିଁ । ବର୍ମା ବଂଶର କୁଳବଧୂ ହିସାବରେ ମୋର ଏ ଘରର ଭବିଷ୍ୟତ ପ୍ରତି କିଛିଟା ଦାୟିତ୍ୱ ଅଛି ।

॥ ଅଣଚାଳିଶ ॥

ତପନ ॥ ବେଶ୍, ମନେ ମନେ ସେ ଦାମ୍ଭିକଟା ଥାଉ । ତମର ଟଙ୍କା, ଗହଣା, ଶାଢୀ ଆଉ ସ୍ନେହରେ ନେଇ ତମେ ଆରାମରେ ବଞ୍ଚି ପାରିବ । ମୋ ପିଛୁ କାହିଁକି ଧରିଚ ?

ଶିପ୍ରା ॥ ଟଙ୍କା ସୁନା ଗହଣାରେ ତ ଜୀବନଟା ଗଢ଼ା ନୁହେଁ । ତମେ ନାରୀ ହୋଇଥିଲେ ବୁଝିଥାନ୍ତ···କୋଉଠି ମନର କେଉଁ ନିଭୃତ କୋଣରେ କେମିତି ଆଘାତ ଲାଗେ କେମିତି କାତର ହୁଏ ଫୁଲଝରପରି ନାରୀର ମନ ।

ତପନ ॥ ମୁଁ ବି ଜୀବନରେ ଅନେକ ନାରୀ ଦେଖିଛି । ସମସ୍ତେ ଚାହାନ୍ତି ଖାଲି ପ୍ରଶଂସା, ଟିକିଏ ଖୋସାମତି । ସେମାନଙ୍କର ଟିକିଏ ଦାବୀ । କିନ୍ତୁ ପ୍ରତିଦାନ ଦେଇ ଜାଣନ୍ତିନି ।

ଶିପ୍ରା ॥ ମୋଠି କେବେ ସେ କୁଣ୍ଠା ଦେଖିଛ ? ମତେ ଭାଙ୍ଗି, ଛେଚି, କାଟି, ଟିକି ଟିକି କରି ପରୀକ୍ଷା କରି ଦେଖ । ଦେବା ପାଇଁ ମୁଁ କେତେ ଆଗ୍ରହୀ ।

ତପନ ॥ ବାଃ, କି ଛଳନା ?

ଶିପ୍ରା ॥ ତମକୁ କେମିତି ଯେ ମୁଁ ବୁଝେଇବି । ତମକୁ ଟିକିଏ ଘରେ ବେଶି ସମୟ ଦେଖିବା ପାଇଁ ମୁଁ କେତେ ବ୍ୟାକୁଳ··· ତମେ ଆଦୌ ସେଇ କ୍ଲବ୍‌କୁ ଯାଅନି, ମଦ ପିଅନି ଆଉ ସେଇ ଆଧୁନିକାଙ୍କ ସାଙ୍ଗରେ ମାତନି ବୋଲି କହୁଚି; କୋଉଥି ପାଇଁ ତମେ କ'ଣ ଜାଣିନା ?

ତପନ ॥ ଓଃ—ମୁଁ ଏସବୁ ଜାଣେ । ମୋର ସ୍ୱାଧୀନତାଗୁଡ଼ିକ କାଟି ନେଇ ତମେ ମତେ ଭଲ ପିଲାଟିଏ କରି ଗଢ଼ିବା ପାଇଁ ଚାହୁଁଚ । ମୁଁ ଗୋଟେ ସ୍ତ୍ରୀ-ବୋଲକରା ସ୍ୱାମୀ ହୋଇ, ଦିବା-ନିଶି ତମର ପ୍ରଶଂସା ଗାଉଥାନ୍ତି । ଆଉ ତମଠାରୁ ସାର୍ଟିଫିକେଟ୍ ପାଉଥାନ୍ତି । ଏଇଆ ନା ?

॥ ପଚିଶ ॥

ଶକ୍ତା ॥ (କାନ୍ଦ ପକାଇ) ନା, ମୁଁ ଏହା ଗୃହ୍ଣିଁ ନଥିଲି । ମୁଁ ଶପଥ କରୁଛି···ମୁଁ ବାବାଙ୍କର ପ୍ରସାଦ ଓ ଠାକୁରଙ୍କ ଧରି ଶପଥ କରି କହୁଛି ମୁଁ ଏସବୁ ଗୃହ୍ଣିଁନଥିଲି ।

ତପନ ॥ ବାଃ—କାନ୍ଦିବା ଆରମ୍ଭ ହୋଇଗଲା ? କଣ ଯେ ତୁମକୁ କହିବି ଶକ୍ତା ?
(ଚାଲିଯାଉଥିଲା)

ଶକ୍ତା ॥ (ପଛରୁ ଡ଼ାକି) ଯାଉଛ କୁଆଡ଼େ ?

ତପନ ॥ ଅଫିସ୍ ।

ଶକ୍ତା ॥ ଖାଇବନି ? ଅଢ଼େଇଟା ବାଜିଲାଣି ପରା ।

ତପନ ॥ ନା—ମୁଁ ତମ ହାତରୁ ଖାଇବନି ।

ଶକ୍ତା ॥ (କାନ୍ଦି) କାହିଁକି ଯେ ମତେ ଏମିତି କହଉଚ ?

ତପନ ॥ Nasty, Silly କ'ଣ ସବୁ ହଉଚି ଏଠି ? କ'ଣ ନା' ଗୋଟେ ବାବା ପୂଜା ହେଉଛି—କ'ଣ ସେଇଟା ହାତରେ ?

ଶକ୍ତା ॥ ପ୍ରସାଦ । ନଅ, ତମେ ବି ନଅ । (ଟିକିଏ ପ୍ରସାଦ ହାତରେ ବଢ଼ାଇ) ଏଇଟିକୁ ଖାଇଲେ ହୁଏତ ତମର ପାଗଳାମି କମି ଯାଇପାରେ···

ତପନ ॥ How dare you ! (ଥାଳି ଫୋପାଡି ଦେଇ ଚାଲି ଯାଉଛି ବାହାରକୁ)
(ହାତରୁ ଥାଳି ଖସିପିବା ପରେ ଶକ୍ତା ବଡ ମର୍ମାହତ ହୋଇ ଯାଇଛି । କାନ୍ଦୁଛି ଓ ଲୁହ ପୋଛି ପୂଜା ଜିନିଷ ତଳୁ ଗୋଟାଇଲା ବେଳେ ଶିଖା ଆସିଛି)

ଶିଖା ॥ ଭାଉଜ !

ଶକ୍ତା ॥ (ମୁଣ୍ଡ ଟେକି ଗୃହ୍ଣିଁଛି ଓ ହସିବା ପାଇଁ ଚେଷ୍ଟା କରୁଛି) କଣ ?

ଶିଖା ॥ କ'ଣ ହେଇଛି ତମର ଭଉଜ ! ଆରେ ଏଗୁଡ଼ାକ ସବୁ···

ଶକ୍ତା ॥ ହାତରୁ ଖସିଗଲା······।

ଶିଖା ॥ ଭାଇ ଏମିତି କାହିଁକି ଚାଲିଗଲେ ?

ଶକ୍ତା ॥ ତାଙ୍କର ଅଫିସ୍ ଯିବା ସମୟ ହୋଇଗଲା—ତେଣୁ ତର ତରରେ ସେ ଚାଲିଗଲେ ?

ଶିଖା ॥ କିନ୍ତୁ ତମ ଆଖି ଦୁଇଟା ଏମିତି ଫୁଲିଛି କାହିଁକି ?

ଶକ୍ତା ॥ (ହସିବାର ବ୍ୟର୍ଥ ଚେଷ୍ଟା କରି) କାହିଁ...ନାଇଁ ତ ।

ଶିଖା ॥ ଆଚ୍ଛା (ଗମ୍ଭୀର ହୋଇ ଯାଇଛି)

ଶକ୍ତା ॥ (କଥା ଭୁଲାଇ) ତମର ଆଜ କୋଣାର୍କ ପିକ୍‌ନିକ୍ ଥିଲା ନା ?

ଶିଖା ॥ Afternoon programme. କାଲି ତ ପୂର୍ଣ୍ଣିମା । ପୂରା ରାତିଟା ସେଇଠି ରହିଯିବୁ ।

ଶକ୍ତା ॥ ପୂରା ରାତିଟା ? ଏ'······ମା ।

ଶିଖା ॥ କୋଣାର୍କର ବାଲି ଉପରେ ଜ୍ୟୋତ୍ସ୍ନା ଝରିପଡ଼ୁଥିବ ଶିଶିର ବିନ୍ଦୁ ନେଇ···ସମୁଦ୍ରର ଅଗଣିତ ଢେଉ...ସେ ତ ଆଉ ଦେହର ଅବସ୍ଥା ନୁହେଁ ; ଦେହାତୀତ ବ୍ଲାକ୍ ପାଗୋଡ଼ା··· ଅସଂଖ୍ୟ ସୂର୍ଯ୍ୟ ତାହାର କଳାକୁ ଭୁଲିପାରି ନାହାନ୍ତି.......

ଶକ୍ତା ॥ ତମେ ରାତିରେ ସେଇଠି ରହିବ ?

ଶିଖା ॥ ହଁ, ସମୁଦ୍ର ବାଲି ଉପରେ ମୁଁ ଖାଲି ଗଡ଼ିବି......। କୋଣାର୍କର ମୂର୍ତ୍ତିଗୁଡ଼ିକୁ ଛୁଇଁବି···ଆଉ ଦେଖିବି ସେଇ ପୁଅଗୁଡ଼ାକୁ—ଯେଉଁମାନେ କି ମୋ' ଦେହକୁ ଟିକେ ଛୁଇଁ ଦେବା ପାଇଁ ଉଦ୍‌ବେଳିତ ହେବେ ତାଙ୍କ ଭଳି... ସେଇ ତ ମଜା···ସେଇ ତ ଦୁଃଖ ମୁଁ ମୋ' ମନର ମଣିଷ ପାଉ ନାହିଁ ।

ଶକ୍ତା ॥ (ଥଟ୍ଟାରେ) ମନର ମଣିଷ କେଉଁଠି ମିଳୁନି !

ଶିଖା ॥ ନା ।

ରକ୍ତା ॥ ଶିଖା ! ମୋର ଗୋଟାଏ ଶ୍ରେଷ୍ଠ ଅନୁରୋଧ ରଖିବ ?

ଶିଖା ॥ କୁହ ?

ରକ୍ତା ॥ ବାବାଙ୍କ ମନରେ ତମେ ଆଉ କଷ୍ଟ ଦିଅନା ।

ଶିଖା ॥ ବାବାଙ୍କୁ ମୁଁ ତ କଷ୍ଟ ଦଉନ ।

ରକ୍ତା ॥ ବାହା ନ ହେବା ପାଇଁ ଶପଥ କରି ତମେ ଯେଉଁ ପାଗଳାମୀ କରୁଛ । ବାବା ସେଥିରେ କ୍ଷୁବ୍ଧ ହୋଇଛନ୍ତି ।

ଶିଖା ॥ କାହିଁକି ? ବାପା ତ ମତେ କଡ଼ା କହିନାହାନ୍ତି । ମୁଁ ତାଙ୍କୁ ସଫା ସଫା ମନା କରିଦେଇଛି ବାହା ହେବିନି ।

ରକ୍ତା ॥ ଛି, ଶିଖା ! ବାବାଙ୍କର ଏକମାତ୍ର ଇଚ୍ଛା ତୁମେ ସୁଖରେ ସଂସାର କର । ନାରୀର ପୂର୍ଣ୍ଣତା ପାଅ । ତା ଛଡ଼ା ପାତ୍ର ବି ଭଲ । ଧନ, ସମ୍ମାନ କେଉଁଠିରେ କମ୍ ନୁହେଁ ।

ଶିଖା ॥ (ଅସହିଷ୍ଣୁ ହୋଇ) ଭାଉଜ !

ରକ୍ତା ॥ ମୁଁ ଚାହେଁ ତୁମେ ସେଇଠି ବାହା ହୁଅ ।

ଶିଖା ॥ ଭାଉଜ ! ତମେ ଏକଥା କହି ପାରୁଛ ?

ରକ୍ତା ॥ କାହିଁକି ପସନ୍ଦ ହେଉନି ?

ଶିଖା ॥ ତୁମକୁ କ'ଣ କହି ବୁଝାଇବି ଭାବି ପାରୁନି । କିନ୍ତୁ ଗୋଟାଏ କଥା ଶୁଣିବ ଭାଉଜ ! ମୋ ଦେହଟାକୁ ମୁଁ ଭଲ ପାଏ— ବାହା ହୋଇ ମୋର ଏ ଆଦରର ଦେହଟାକୁ ଖିନ୍ ଭିନ୍ କରିଦେବାକୁ ଚାହେଁନା । ତା ଛଡ଼ା ବିବାହଟା କ'ଣ ଏକାନ୍ତ ଆବଶ୍ୟକ ?

ରକ୍ତା ॥ ହଁ ଶିଖା...ନାରୀତ୍ୱର ଆରମ୍ଭ ସେଇଠି ।

ଶିଖା ॥ କିନ୍ତୁ ମୁଁ ବୁଝିପାରୁନି ଭାଉଜ । ଏତେ ବିସ୍ତୀର୍ଣ୍ଣ ଦୁନିଆ ଭିତରେ ମୁଁ ଟିକିଏ ହେଲେ ଆଶ୍ରୟ ଖୋଜି ପାଉନି କାହିଁକି ? ଜୀବନର ଏ ଲମ୍ବା ରାସ୍ତା ଉପରେ ଚାଲିଚାଲି

ଥକି ଗଲେ ମୋ ହାତ ଧରି ନେବା ପାଇଁ ଯେମିତି କେହି ନାହାନ୍ତି ।

ରିକ୍ତା ॥ ନିଶ୍ଚୟ ଅଛନ୍ତି ଶିଖା । ପବିତ୍ର ଭାବେ ତମେ ଅନୁଧ୍ୟାନ କରି ଦେଖିବ । ତମ ମନର ମଣିଷ ତୁମକୁ ନିଶ୍ଚୟ ମିଳିବ । କିନ୍ତୁ ତା ବୋଲି ତମେ ଏମିତି ଅଭିଆଡ ରହିବ ?

ଶିଖା ॥ ତମେ ବୁଝିପାରିବନି ଭାଉଜ....I am like a green seed of unfulfilled passion...a bewildered fragment of a burnt planet...ମୁଁ ସେଇ କକ୍ଷଚ୍ୟୁତ ଦଗ୍‌ଧୀଭୂତ ତାରା...କେହି ମତେ ଶାନ୍ତି ଦେଇ ପାରିବେନି ।

ରିକ୍ତା ॥ ଏତେଟା ସେଣ୍ଟିମେଣ୍ଟାଲ ହେଲେ ଦୁନିଆରେ ତମେ ଚଳି ପାରିବନି ଶିଖା...ବରଂ ହାରିଯିବ ଶୋଚନୀୟ ଭାବେ ।

ଶିଖା ॥ ସେଇ ହାରିଯିବା ଭିତରେ ବି ମୁଁ ଆନନ୍ଦ ପାଏ ଭାଉଜ... ତମେ ଜାଣ ? ମୁଁ ସଂଖ୍ୟାହୀନ ପୁରୁଷଙ୍କ ସଙ୍ଗରେ ଖୋଲି ଖୋଲି ଭାବେ ମିଶେ ବୋଲି । ମୋ ନାଁରେ ଅଶ୍ଳୀଳ ପୋଷ୍ଟର ମରାଯାଇଥିଲା । ମନେ ମନେ ସେଦିନ ମୁଁ ଖୁବ୍ ହସିଥିଲି । ଏ ସଭ୍ୟତା ଏତେ ହାଲୁକା—ଏ ଶିକ୍ଷା ଏତେ ଅର୍ଥହୀନ, ସେଦିନ ମୁଁ ବୁଝିଥିଲି ।

ରିକ୍ତା ॥ କିଏ କ'ଣ କହିଲେ ଆମର ସେଥିରେ କ'ଣ ଅଛି ଶିଖା । ତମକୁ ମୁଁ କହୁଛି...ତମ ବାପା ଆଉ ଭାଇ ଠିକ୍ କହୁଛନ୍ତି । ଆମେ ତ କିଛି କହୁନୁ ? ମନକୁ ମନ ତମେ କାହିଁକି ନିଜ ବିଷୟରେ ମନ୍ତବ୍ୟ କରୁଛ ?

ଶିଖା ॥ ତମେ ସତ କହୁଛ ଭାଉଜ ? ମତେ କେହି ଅପସନ୍ଦ କରୁ ନାହାନ୍ତି ? ଉଗ୍ର ଆଧୁନିକତାର ପ୍ରତୀକ ବୋଲି ମତେ କେହି ଚରିତ୍ରହୀନା କହୁ ନାହାନ୍ତି ?

ରିକ୍ତା ? ତମେ କ'ଣ ପାଗଳୀ ହେଲି ଶିଖା ? ଭାଉଜ ହେଲେ ବି ତମକୁ ମୁଁ ଶ୍ରେଷ୍ଠ ଭଉଣୀ ଭଳି ଦେଖି ଆସିଛି । ତମେ

ମୋର ଏଇ ଗୋଟାଏ ଅନୁରୋଧ ରଖାକର ଶିଖା···
ତମେ ବିବାହ କର ।

ଶିଖା ।। ତମେ ଏତେ ବଡ଼ ଦ୍ୱନ୍ଦ୍ୱ ଭିତରେ କାହିଁକି ପକାଉଛ ଭାଉଜ ? ବାହା ହୋଇ ପରିଣତିଟା ଯାହା ହୁଏ ମୁଁ ଦେଖୁଛି । ତମେ ତ ମୋଠୁ ଦି' ବର୍ଷ Senior ଥିଲ ଭାଉଜ ? ମୁଁ ଦେଖିଛି କେତେ ଅଳଅଳରେ ଅର୍ଥର ସମୁଦ୍ର ଭିତରେ ବଢ଼ି ଆସିଛ ତୁମେ...କିନ୍ତୁ ଜୀବନରେ ତମେ କ'ଣ ପାଇଲ ଭାଉଜ କହିପାରିବ ?

ରିକ୍ତା ।। ନା, ଏ ପ୍ରଶ୍ନ ତମେ ମତେ ପଚାରି ପାରିବନି ଶିଖା । ମୁଁ ଖୁବ୍ ସୁଖରେ ଅଛି । ସୀମନ୍ତରେ ମୋର ସିନ୍ଦୂର··· ହାତରେ ଶଙ୍ଖା ଏଇ ତ ସଧବା ଜୀବନର ମୋର ଚରମ ସାଫଲ୍ୟ ।

ଶିଖା ।। ହଁ, ଏଇ ତ ବର୍ତ୍ତମାନ ଦେଖିଲି ଭାଉଜ । ମୋ ଆସିବା ଆଗରୁ ଭାଇଙ୍କ ଅତ୍ୟାଚାର ପାଇଁ ତୁମେ ଲୁହ ଗଡ଼ାଉଥିଲ । ଜୀବନର ପୂର୍ଣ୍ଣତା କ'ଣ ଏଇ ଲୁହ ଭିତରେ ପାଉଛ ଭାଉଜ ? କୁହ···ଉତ୍ତର ଦିଅ...ବାହା ହୋଇ ତୁମେ କି ସୁଖ ପାଇଲ ?

ରିକ୍ତା ।। ନା, ନା ତମେ ଭୁଲ ଦେଖିଛ ଶିଖା...ମୁଁ କାନ୍ଦି ପାରେନା ···ପ୍ରଣୟର ପ୍ରାଚୁର୍ଯ୍ୟଭରା 'ମଳୟ ନିବାସ'ର ନାୟିକା ରିକ୍ତା କେବେ ଲୁହ ଗଡ଼ାଇପାରେ ? ତମେ ମିଛ କହୁଛ ଶିଖା । ମୁଁ ଖୁବ୍ ସୁଖୀ...ମୋ'ଠୁ ବଳି ସୁଖୀ ଏ ଦୁନିଆରେ ଆଉ କେହି ନାହାନ୍ତି—(କହୁ କହୁ କୋହ ସମ୍ଭାଳି ନପାରି ଭିତରକୁ ଚାଲିଯାଇଛି । ପଛେ ପଛେ ଶିଖା)

ଶିଖା ।। ଭାଉଜ (ଭିତରକୁ ଚାଲିଯାଇଛି)

—ମଞ୍ଚ ଅନ୍ଧକାର—

—ଯବନିକା—

# ଦ୍ୱିତୀୟ ଅଙ୍କ



[ ସମୟ ସନ୍ଧ୍ୟା । ବଗିଚା ଭିତରେ ଇଜେଲ ପାଖରେ ମୁକ୍ତିକାନ୍ତ ଠିଆ ହୋଇ ଆଙ୍କୁଛନ୍ତି । ହରିହର ଘର ସଫା କରୁଛି । ବାହାରୁ ଶିଖା କିଛି ମାଗାଜିନ୍ ଧରି ଆସି ଘର ଭିତରକୁ ଯାଉଛି । ଗଲା ପୂର୍ବରୁ ବଗିଚା ପଟେ ଟିକିଏ ଚାହିଁ ଦେଉଛି ଏବଂ ପଚାରୁଛି । ]

ଶିଖା ॥ କେତେ ଦୂର ଆଗେଇଲ ?

ମୁକ୍ତିକାନ୍ତ ॥ ଭାବୁଛି ନାକଟାକୁ ଏଇଠି ଟିକିଏ ଗାଢ଼ କରିଦେବି । ସେଇ ଜାଗାଟାରେ କଳା ଭଲ ଲାଗିଥାନ୍ତା । କିନ୍ତୁ ପୁଣି ଭାବୁଛି ଡାକ୍ତର ବସୁଙ୍କୁ ଗୋଟାଏ କ୍ୟାନ୍‌ଭାସ ଭିତରେ ଆଙ୍କିବା କେତେ ଯେ କଷ୍ଟକର !

ଶିଖା ॥ ଡାକ୍ତର ବସୁଙ୍କ ଉଚ୍ଚତା କେତେ ?

ମୁକ୍ତିକାନ୍ତ ॥ ଅନେକ, ଅନେକ ଉଚ୍ଚ । ସମୁଦ୍ର ଭିତରେ ଢେଉ ପରି ଉଚ୍ଚ । ତା ପରେ ହାବୁକାଏ ଲହରୀ ପରି ଆସନ୍ତି । ମୋର ଆଖିପତା ସଜଳ ହୋଇଯାଏ । ତା' ପରେ ସେ ଭୁଲି ଯାଆନ୍ତି ।

ଶିଖା ॥ ମୁଁ ଯଦି ଡ଼ାକ୍ତର ବସୁଙ୍କୁ ଦେଖନ୍ତି, ପଗ୍ଭରନ୍ତି ବଞ୍ଚିବା ପାଇଁ କ'ଣ ନିହାତି ଛଳନା ଆବଶ୍ୟକ ? ଅଭିନୟ ଆବଶ୍ୟକ ?

ମୁକ୍ତିକାନ୍ତ ॥ ଡ଼ାକ୍ତର ବସୁ ସବୁ ପ୍ରଶ୍ନର ଉତ୍ତର ଦେଇ ପାରନ୍ତି । ସବୁ କଥାର ଉତ୍ତର ଅଛି । ଯେମିତି ସେ କହନ୍ତି ଆମେ ଖାଲି ଗୋଟିଏ ଗୋଟିଏ ସ୍ୱପ୍ନ ନେଇ ବଞ୍ଚିଛେ । କିଛି ଚିନ୍ତା ନାହିଁ । କିଛି ସଂଘର୍ଷ ନାହିଁ ।

ଶିଖା ॥ ତମେ ଗୋଟିଏ ପ୍ରତିଧ୍ୱନିକୁ କେମିତି ଯେ ଆଙ୍କିବ, ଅମୃତକୁ କେମିତି ଯେ ରଙ୍ଗରେ ସଜାଇବ···ମୁଁ ବୁଝି-ପାରୁନି ।

ମୁକ୍ତିକାନ୍ତ ॥ ମୁଁ ଏହି କିଛି ସମୟ ଆଗରୁ ସେ ଅସ୍ତ ସୂର୍ଯ୍ୟଙ୍କୁ ଗ୍ଭହିଁ ଠିଆ ହୋଇଥିଲି । ଡ଼ାକ୍ତର ବସୁ ହଠାତ୍ ପକ୍ଷୀଙ୍କ ଭଳି ଆକାଶଟାକୁ ଏକ ସୁନ୍ଦର ସଂଗୀତରେ ଭରି ଦେଇଗଲେ ।

ଶିଖା ॥ ଆଚ୍ଛା ! ବେଶ୍ ତ, ଡ଼ାକ୍ତର ବସୁ ବଡ଼ ଅଦ୍ଭୁତ ଲୋକ ଦେଖୁଛି ! ଏକୁଟିଆ ରହିଲେ ଭୂତ ଭଳି ମାଡ଼ି ବସୁଛନ୍ତି, ପାହାଡ଼ ଉପରକୁ ନେଇ ଯାଉଛନ୍ତି । ଆଶ୍ଚର୍ଯ୍ୟ (ଟିକିଏ ରହି) ଗ୍ଭ' ପିଇଲେଣି ?

ମୁକ୍ତିକାନ୍ତ ॥ ନା, ଏଇନା ପିଇବାକୁ ପଡ଼ିବ ?

ଶିଖା ॥ ହଁ ଗ୍ଭ' ନ ପିଇଲେ ତ ଅଙ୍କା ହୋଇ ପାରିବନି । ଆପଣ ବସନ୍ତୁ, ଏଇଠି, ମୁଁ ଗ୍ଭ' ନେଇ ଆସୁଚି (ଶିଖା ଯାଇଛି—ବାହାରୁ ଗଜେନ୍ଦ୍ର ଗୁମାସ୍ତା ଆସିଛନ୍ତି)

ଗଜେନ୍ଦ୍ର ॥ କିରେ ହରିଆ······।

ହରିଆ ॥ ବାବୁ ଜୁହାର ।

ଗଜେନ୍ଦ୍ର ॥ ବାବୁ ଅଛନ୍ତି ?

ହରିଆ ॥ ହଁ' ହନ ହୋଲପଡ଼ା ଘରକୁ ଫେରି ନାହାନ୍ତି । ତମ ବାବୁ ସଙ୍ଗରେ କୁଆଡ଼େ ଜଙ୍ଗଲକୁ ଯାଇ ଶିକାର କରୁଛନ୍ତି । ଇଆଡ଼େ ମା' ଆମର ନଖାଇ ନପିଇ ବେଗରେ ସଢ଼ୁଛନ୍ତି ।

॥ ସତାବନ ॥

ଗଜେନ୍ଦ୍ର ॥ କାହିଁକି ତମର ଶିଖା ଦେଈ ନାହାନ୍ତି କି ?

ହରିଆ ॥ College ଯିବା ଦିଅ, ବୁଝୁନା ଗୁମାସ୍ତା ବାବୁ । ସମସ୍ତ ହେଲେ ତ, କୁଆଡ଼େ ଦେଖା ନ ଥିଲା ?

ଗଜେନ୍ଦ୍ର ॥ ପଢ଼େଇ ଥିଲି ଟିକିଏ କଲିକତା । କିଛି ଲୁହାଛଡ଼ ଯୋଗାଡ଼ କରି ଆଣିଲି । ଘର ଗୁଡ଼େ ତିଆରି କରୁଛି । ତେବେଣେ ଲୁହାଛଡ଼ ନ ହେଲେ କାମ ହୋଇ ପାରୁନି । ମା'ଙ୍କ ଦେହ ତା ହେଲେ ଖରାପ ହୋଇଛି, ନାହିଁ ? (ଆସ୍ତେ ଆସ୍ତେ) ହଇରେ, ବାବୁଙ୍କୁ ସେ କଥା କହିଲୁ ? ମୁଁ ଯୋଉ ସେ କଥା କହିଥିଲି । ଶିଖା ଦେଈଙ୍କ ବାହାଘର କଥା ମ ।

ହରିଆ ॥ (ଘର ଭିତରକୁ ଠାରି) ଅଛନ୍ତି । ତମେ କାହିଁକି ଗୁମାସ୍ତା ବାବୁ ସବୁବେଳେ ତାଙ୍କ କଥା ପଚାରୁଛ ଯେ ?

ଗଜେନ୍ଦ୍ର ॥ ହଇରେ କଥାଟା ସେମିତି ଖୁବ୍‌ଷଣ ବୋଲି ପଚାରୁଛ ନା । ମିଛରେ ପଚାରୁଛି ?

ହରିଆ ॥ ନାହିଁ ଲୋ ମା'—ପଦ ଶୁଣିବେ ଯିଏ । ମତେ ଆଉ ରଖିବେ ନା ?

ଗଜେନ୍ଦ୍ର ॥ ତୁ ପରା ମୋ ପାଖ ଲୋକରେ ହରିଆ...ତତେ ମୁଁ କେତେ ଭଲ ପାଏ । ମୁଁ ପଚାରୁଛି ଟିକିଏ କହୁନୁ ।

ହରିଆ ॥ ସତେ ଗୁମାସ୍ତା ବାବୁ, ତମେ ମତେ ଭଲ ପାଅ ?

ଗଜେନ୍ଦ୍ର ॥ ଖୁବ୍‌ଷଣ ଭଲ ପାଏ । ତୁ ପରା ମୋ ଅନ୍ଧାର ଘରର ଲଣ୍ଠନ ଆଲୁଅରେ (ଅଣ୍ଟାଳ ଦେଲାବେଳକୁ ସେ ପଳାଇଛି)

ହରିଆ ॥ ତମେ ବଡ଼ ଦୁଷ୍ଟ ।

ଗଜେନ୍ଦ୍ର ॥ ଓହୋ ! କି ଆଖି ବାଣ ମାରୁଛି ହରିଆ ବାବୁ । ମୋ ଅଫିମଖିଆ ଗୁଣ୍ଡଟା ଖାଲି ମକଚ ହୋଇ ଯାଉଛି । କି ଖୁବ୍‌ଷଣ !

ହରିଆ ।। ଛି, ଏ ମଣିଷଟାକୁ ଲାଜ ନାହିଁ ଲୋ ମା ।

ଗଜେନ୍ଦ୍ର ।। ଲାଜ ପଛେ ନ ଥାଉ । ତୁ କହିଲୁ ବାହାଘର କଥା ଶୁଣି ତୋର ଶିଖା ଦେଈ କ'ଣ କହିଲେ ?

ହରିଆ ।। ସେ ପରି ନ କହିବା କଥା କହୁଛନ୍ତି ।

ଗଜେନ୍ଦ୍ର ।। ଏଁ ନ କହିଲ କଥା ? ଖୁଷଣ ଝିଅଟେ ତ । ହଁ କ'ଣ କହିଲେରେ ।

ହରିଆ ।। ତମ ଶ୍ରୀକାନ୍ତ ବାବୁଙ୍କ କଥା ଶୁଣି ଖୁଷଣ ଚିଡ଼ିଲେ । ଖାଲି ଗାଳି ଦେଉଛନ୍ତି ।

ଗଜେନ୍ଦ୍ର ।। ଖୁଷଣ ଖବରରେ । ହଁ—ହଁ...ଏଇଟା ତ କୁଆଡେ ପ୍ରେମର ପହିଲା ବରଷା ବୋଲି ପାଠ ଡ଼ାକୁଛୁ । ଯା ହେଉ ଗାଳି ଦେଲେଣି ମାନେ ଏଣିକ ଆଉ କଥାଟା ଛିଣ୍ଡିବାକୁ ବେଶି ସମୟ ଲାଗିବନି । ହଉ (ପକେଟରୁ ଖଣ୍ଡେ ହାର ବାହାର କରି) ଏଇଟା ତମ ଦେଈଙ୍କ ପାଇଁ ବାବୁ ଦେଇଛନ୍ତି । ଦେଈଙ୍କୁ ଆସ୍ତେକିନା ଦେଇ ଦେବୁ ଯେମିତି ମା' ନ ଦେଖନ୍ତି ।

ହରିଆ ।। (ନେଇ ନେଇ) ନାହିଁ ଲୋ ମା—ମୋ ଗୁଡ ଥରୁଛି—ମୁଁ ଦେଇ ପାରିବନି ।

ଗଜେନ୍ଦ୍ର ।। (ପୁଣି ଗୋଟିଏ ପ୍ୟାକେଟ ତାକୁ ଦେଇ) ଏଇଟା ତୋ' ପାଇଁ ।

ହରିଆ ।। (ଲାଜ ଲାଜ ହୋଇ) ଏଇଟା କଣ ?

ଗଜେନ୍ଦ୍ର ।। ହଷ୍ଟୁଟ···ମଧୁର, ଖୁଷଣ ମଧୁର । ଖାଇଦେ ।

ହରିଆ ।। ନାଁ ।।

ଗଜେନ୍ଦ୍ର ।। ମୋ ଆଗରେ ଖାଇବା ପାଇଁ ଲାଜ ମାଡ଼ୁଛି ? ହଁ ଖୁଷଣ ଖବରରେ ମାଡ଼ିଥିବ । ହଉ ରଖି ଦେଇଥା । ପରେ ଖାଇବୁ । ବଡ଼ ମଧୁର ।

ହରିଆ ॥ ମା' ଯଦି ଗାଳି ଦେବେ ।

ଗଜେନ୍ଦ୍ର ॥ ଆରେ ନାଁ...ସେ ହାରର ଦାମ କେତେ ଜାଣିଛୁଟି ? ପାଞ୍ଚହଜାର ।

ହରିଆ ॥ ଏ

ଗଜେନ୍ଦ୍ର ॥ ହଉ ମୁଁ ଯାଉଛି । ହାରଟା ହୁସିଆରରେ ଦେବୁ । ବୁଝିଲୁ, ଖୁବ୍ ଦାମିକା । ପୁଣି ଦେଖା ହେବ—ଏଁ । ତୁ ଆମ ଘର ଆଡ଼େ କେତେବେଳେ ଆସୁନୁ । ହଉ ଆସିବୁ (ଯାଉ ଯାଉ ଆଖି ପଡଯାଇଛି ମୁକ୍ତିକାନ୍ତ ଉପରେ) କଏ ? ଚଉଧୁରୀ ବାବୁ ?

ମୁକ୍ତିକାନ୍ତ ॥ ନାଁ—ମୁଁ ପାଗଳ ନୁହେଁ ସେଦିନ ମୁଁ ଆପଣଙ୍କୁ କହିଥିଲି ନା ମୁଁ ସୁସ୍ଥ ଅଛି ବୋଲି ।

ଗଜେନ୍ଦ୍ର ॥ ହଁ, ହଁ—ଖୁବ୍ ସୁସ୍ଥ ଲୋକ ତମେ, ଜାଣିନି । ହଇଏ ତମକୁ ସେଇଠି ପାଗଳଖାନାରେ ହାତଗୋଡ଼ ବାନ୍ଧି ଖୁବ୍ କରୁଥିଲେ ।

ମୁକ୍ତିକାନ୍ତ ॥ ନାହିଁ ଆଜ୍ଞା । ମୁଁ ସେମିତି ଧରଣର ପାଗଳ ହୋଇନଥିଲି । ମାନେ, ଡ଼ାକ୍ତର ବସୁ କହୁଥିଲେ । ମୋର କୁଆଡ଼େ ଟିକିଏ ଅପରିଣତ ମସ୍ତିଷ୍କ ଥିଲା ।

ଗଜେନ୍ଦ୍ର ॥ ହୋ—ହୋ ବୁଝିଲି । ହଁ ତମ ନାଁଟା କ କାନ୍ତ ବୋଲି କହୁଥିଲ କି ?

ମୁକ୍ତିକାନ୍ତ ॥ ଶ୍ରୀ ମୁକ୍ତିକାନ୍ତ ଚଉଧୁରୀ ।

ଗଜେନ୍ଦ୍ର ॥ ଶ୍ରୀ ଆଉ ଚଉଧୁରୀ ଢ'ଟା ପଦ ନ କହିଲେ ବି ଚଳିବ । କ'ଣ ଛବି ଆଙ୍କିବେ ?

ମୁକ୍ତିକାନ୍ତ ॥ (ମୁଣ୍ଡ ହଲାଇ) ହଁ କେମିତି ହୋଇଛି କହିଲ ?

ଗଜେନ୍ଦ୍ର ॥ (ଦେଖି) ଖୁବ୍ ହୋଇଛି । ଏଇଟା ଶିଖାଦେବୀଙ୍କର ଛବିଟି ? ମନକୁ ମନ ବେଶ୍ ତ ଆଙ୍କି ଯାଉଛି ।

॥ ଷାଠିଏ ॥

ମୁକ୍ତିକାନ୍ତ । ଏଇଟା ତ ମାନେ···ଆପଣଙ୍କୁ ଝିଅ ଫଟ ପରି ଲାଗୁଛି ?
ଏଇଟା ତ ଡ଼ାକ୍ତର ବସୁଙ୍କର ।

ଗଜେନ୍ଦ୍ର ॥ ଆଚ୍ଛା ପାଗଳଟେ ତମେ ! ହଇଏ ଛବି ମାନେ ତ ଝିଅ । ପୃଥିବୀରେ ଆଉ କାହାର କ'ଣ ଛବି ଅଙ୍କାଯାଏ । ଯାହା ହେଉ ଖୁସ୍‌ଣ ହୋଇଛି । କ'ଣ ବାହାଘରରେ ଏଇଟାକୁ ପଞ୍ଜଭୁକ ଦେବ କଓ ?

ମୁକ୍ତିକାନ୍ତ ॥ ବାହା ଘର ? କାହାର ?

ଗଜେନ୍ଦ୍ର ॥ ଏଇହେ—ତମେ ପରା ଏଇ ଘରେ ରହୁଛ । ଜାଣିନା, ଆମ ଶ୍ରୀକାନ୍ତ ବାବୁଙ୍କୁ ସିଏ ବାହା ହେଉଛନ୍ତି ବୋଲି ।

ମୁକ୍ତିକାନ୍ତ ॥ ଶ୍ରୀକାନ୍ତ ବାବୁ ? ମାନେ ସିଏ ଏଠାକୁ ଆସନ୍ତି ? ମଦ ପିଅନ୍ତି, ଆଉ ଗ୍ଭଲଯାଆନ୍ତି ।

ଗଜେନ୍ଦ୍ର ॥ କ'ଣ କହିଲ ? ଖୁସ୍‌ଣ ଲୋକ ତମେ ଜଣାପଡ଼ୁଛି । ସବୁ ପଦାରେ ପକେଇ ଦେବ ।

ମୁକ୍ତିକାନ୍ତ ॥ ମାନେ···ମୁଁ ।

ଗଜେନ୍ଦ୍ର ॥ 'ମାନେ ମୁଁ' କଣ ? କଥା କହି ଆସୁନି ?

ମୁକ୍ତିକାନ୍ତ ॥ କିନ୍ତୁ ସିଏ ମଦ ଖାଆନ୍ତି ଯେ ।

ଗଜେନ୍ଦ୍ର ॥ କିଏ କହିଲା ଖାଆନ୍ତି ?

ମୁକ୍ତିକାନ୍ତ ॥ ମୁଁ ଦେଖିଛି ।

ଗଜେନ୍ଦ୍ର ॥ ଓହୋ···ଲୋକଟା ଅତ୍ୟନ୍ତ ଖୁସ୍‌ଣ ଦେଖୁଛି । ଏଇ ହେ ଦେଖିଛ ବୋଲି ଯା ତାହା ଆଗରେ କହିବ ନା କଣ ?

ମୁକ୍ତିକାନ୍ତ ॥ କିନ୍ତୁ ସିଏ ମଦ ଖାଆନ୍ତି ଯେ···ପୁଣି ଶିଖା ଦେବୀଙ୍କ ପାଇଁ ସିଏ ତ ଉପଯୁକ୍ତ ନୁହଁନ୍ତି ।

ଗଜେନ୍ଦ୍ର ॥ ତମେ ଜାଣି ପକେଇଲ ? ପୁଅର ମୁଣ୍ଡରେ ପଛେ ଗ୍ଭରଟା ନଥାଉ ବୋଲ୍‌ଟେ ଡ଼ିଲ...କହିଲ ଉପଯୁକ୍ତ ନୁହଁନ୍ତି । ଆଚ୍ଛା

ଭୀଷଣ ଲୋକ ହେବ ତମେ···ଏତେ ଆଜି ଗାନ୍ଧିମହାତ୍ମା ଭଳି ସତ କଥା କହ ନାହିଁ ।

ମୁକ୍ତିକାନ୍ତ ॥ ଡ଼ାକ୍ତର ବସୁ କହୁଥିଲେ...

ଗଜେନ୍ଦ୍ର ॥ (କଥା ଛଡ଼ାଇ) ଗୁଳି ମାର ହେ। ତମ ଡ଼ାକ୍ତର ବସୁଙ୍କୁ···। ଏଇଟା ଆରୋଗ୍ୟଶାଳା ନୁହେଁ । ଜଣେ ଉଚ୍ଚକୋଟୀର ଭୀଷଣ ଭଦ୍ର ଲୋକର ଘର । କାହାର ସମ୍ମାନ ଗଲା ଭଳି କଥା କହିବା ନିଷେଧ । ବୁଝିଛ ?

ମୁକ୍ତିକାନ୍ତ ॥ (କିଛି ନ ବୁଝି ମୁଣ୍ଡ ହଲାଇଛି)

ଗଜେନ୍ଦ୍ର ॥ (ବାହାରକୁ ଯାଉ ଯାଉ) ଏଣିକି ଅନେକ କଥା ବୁଝିବାକୁ ପଡ଼ିବ । କହି ପକାଇଲେ ଏଇଠି ଲୋକ ତମର ଅବସ୍ଥା ଭୀଷଣ କରି ପକାଇବେ । ହୁସିଆରେ ପାଗଳା ବାବୁ...।
[ ଗଜେନ୍ଦ୍ର ଗୁମାସ୍ତା ବାହାରକୁ ଚାଲିଗଲା ପରେ ଶିଖା ଟ୍ରେରେ ଚା' ନେଇ ଆସିଛି । ମୁକ୍ତିକାନ୍ତ ଅନ୍ୟମନସ୍କ ଭାବେ ସେଇଠି ଆକାଶକୁ ଚାହିଁ ଠିଆ ହୋଇଛି ଏବଂ ଶିଖା ପଛରୁ ଆସିଛି । ]

ଶିଖା ॥ ମୁକ୍ତିକାନ୍ତ ବାବୁ !

ମୁକ୍ତିକାନ୍ତ ॥ (ଚମକି) କିଏ ? ଓଃ ଆପଣ ।

ଶିଖା ॥ ଏମିତି ଠିଆ ହୋଇ କ'ଣ ଭାବୁଛନ୍ତି ଯେ ।

ମୁକ୍ତିକାନ୍ତ ॥ ଡାକ୍ତର ବସୁଙ୍କୁ ପଚାରୁଥିଲି । ପଚାରୁଥିଲି, ସତ କହିବା ଉଚିତ ନା ନାହିଁ ।

ଶିଖା ॥ ଆକାଶକୁ ପ୍ରଶ୍ନ କରୁଥିଲେ ?

ମୁକ୍ତିକାନ୍ତ ॥ ସେଇଠି···ଏଇ ଯୋଉ ସୂର୍ଯ୍ୟଟା ବୁଡ଼ିଯାଉଛି· ବୁଡ଼ି-ଯାଉଥିବା ସୂର୍ଯ୍ୟଟାକୁ ପଚାରୁଥିଲି ।

ଶିଖା ॥ କିଛି ଉତ୍ତର ମିଳିବନି, ଆଉ ଟିକିଏ ପରେ ଅନ୍ଧାର ହୋଇଯିବ । ତା ଭିତରେ ସତ ଓ ମିଛ ସବୁ ହଜିଯିବେ···।

ମୁକ୍ତିକାନ୍ତ ॥ ମାନେ ଆଜ ମୋତେ ଖୁବ୍ ଏକଲା ଲାଗୁଛି ତ, ସେଇଥି ପାଇଁ...

ଶିଖା ॥ ଏକଲା ଲାଗୁଛି ? ଏଇ ତ ମୁଁ ପାଖରେ ଅଛି ।

ମୁକ୍ତିକାନ୍ତ ॥ ନାଁ, ମାନେ ମୁଁ ବୁଝେଇ ପାରୁନ ।

ଶିଖା ॥ ସବୁକଥା କଣ ବୁଝେଇ ହୁଏ ? (ହଠାତ୍) ବସନ୍ତୁ । ଟ୍ରେ'ଟା ପିଇ ନାହାନ୍ତି ବୋଲି କହୁଛି ବୁଝିପାରୁ ନାହାନ୍ତି ।

ମୁକ୍ତିକାନ୍ତ ॥ ନା' ମାନେ ଏକଲା ଲାଗୁଛି···ପୁଣି ହୋଇପାରେ—ଏକଲା ନୁହେଁ, ସେଇଠି ମୁଁ, ଏମିତି ଲାଗିଲେ ଗଛ, ପତ୍ର, ଫୁଲ, କାଠ, ପକ୍ଷୀ···ଏମାନଙ୍କ ସଙ୍ଗରେ କଥା ହୁଏ । (ବସିଲା)

ଶିଖା ॥ ସେଇ Garden Chair ଉପରେ ବସି ଗ୍ଲେଷ୍ଟ Tea Poy ଉପରେ ଟ୍ରେ' ଡଆର କରୁ କରୁ ଏଇଠି ସେମାନେ କ୍ରମେ କ୍ରମେ ସିଲହଟରେ ପରିଣତ ହେବେ । ପାଖ ରୁମ୍‌ରେ ଲାଇଟ୍ ଏ ପର୍ଯ୍ୟନ୍ତ ଲାଗିନ । ଅନ୍ଧାର ହୋଇ ମଧ୍ୟ ହୋଇନ । ଆକାଶରେ ତଥାପି କହୁଟା ରଙ୍ଗ ଲାଗି ରହିଛି ।) ଆପଣ ତା' ହେଲେ ପଶୁପକ୍ଷୀଙ୍କ କଥା ବୁଝିପାରନ୍ତି ନା କ'ଣ ?

ମୁକ୍ତିକାନ୍ତ ॥ ନା ଠିକ ତା' ନୁହେଁ···ମତେ ଲାଗେ ମୁଁ ଯେମିତି ନିଜେ ଚଢ଼େଇଟିଏ ହୋଇ କେଉଁ ଏକ ଅନ୍ଧାରିଆ ଝାମ୍ପୁରା ବରଗଛ ଡାଳରେ ଝୁଲୁଥିବା ବସା ଭିତରେ ପଶିଯାଇଛି । (ତା' ପରେ ହସି ଦେଇ) ଜାଣନ୍ତି, ଏସବୁ କ'ଣ ? ଅଦ୍ଭୁତ ବ୍ୟାପାର । ମୁଁ ଏ ବିଷୟରେ ଡାକ୍ତର ବସୁଙ୍କୁ ପଚାରିଲେ ସେ କହନ୍ତି...“ମୋର ମୁଣ୍ଡଟା ଟିକିଏ କମ୍ ବୁଦ୍ଧିଆ”···।

ଶିଖା ॥ ନିଅନ୍ତୁ ଚା (ଚା ବଢ଼େଇ ଦେଇ) ଡାକ୍ତର ବସୁ ଆଉ ସବୁ କଣ କହୁଥିଲେ ?

॥ ତେଷଠି ॥

ମୁକ୍ତିକାନ୍ତ ॥ ଅନେକ କଥା । (ଗ୍ଲ' ପିଉ ପିଉ) ସବୁ କଥା କ'ଣ ମୁଁ ବୁଝିପାରେ ? ଖାଲି ଶୁଣେ । ଆପଣ, ଆପଣଙ୍କ କଥା କହୁ ନାହାନ୍ତି ?

ଶିଖା ॥ ମୋତେ 'ଆପଣ' 'ଆପଣ' କ'ଣ କହୁଛନ୍ତି ଯେ ?

ମୁକ୍ତିକାନ୍ତ ॥ ଆଉ କ'ଣ ବୋଲି ଡାକିବ ? ନୂଆ ଲୋକଙ୍କୁ ତ ଏମିତି ଡାକନ୍ତି ।

ଶିଖା ॥ ମୁଁ କ'ଣ ନୂଆ ? ଆପଣ ଏଇଠି ଦେଢ଼ ମାସ ହେଲା ରହିଲେଣି । ଆପଣ ଆମ ଘରର ଲୋକ ହୋଇଗଲେଣି ।

ମୁକ୍ତିକାନ୍ତ ॥ (ହସି) ସତେ ? ତଥାପି···।

ଶିଖା ॥ ମୋ ନାଁ ଶିଖା ବୋଲି ତ ଜାଣିଥିବେ ।

ମୁକ୍ତିକାନ୍ତ ॥ ତା ହେଲେ ଆପଣଙ୍କୁ 'ତୁମେ' ବୋଲି ଡାକିବି ?

ଶିଖା ॥ ସେଇଟା ଆପଣ ଜାଣିଥିବେ ନାଁ, ମୁଁ କ'ଣ ଜାଣେ !

ମୁକ୍ତିକାନ୍ତ ॥ (ଗ୍ଲ'ଟା ଅଧା ପିଇ ଶିଖାକୁ ଅନାଇ ରହିଛନ୍ତି)

ଶିଖା ॥ (ନିଜକୁ ଗୁହିଁ) କ'ଣ ଦେଖୁଛନ୍ତି ? ଗ୍ଲ'ଟା ଥଣ୍ଡା ହୋଇଗଲା ଯେ !

ମୁକ୍ତିକାନ୍ତ ॥ ଏଁ, ହଁ । (ତର ତରରେ ଗ୍ଲ'ଟା ପିଇ ଦେଇଛନ୍ତି) ଦେଖନ୍ତୁ··· ଆପଣ ଯଦି ବାଞ୍ଛରେ ସେଇ ଗାଈ ଚରାଇବା ଝିଅ ହୋଇ ଥାଆନ୍ତେ, ତା ହେଲେ 'ତମେ' ବୋଲି ଡାକିଥାନ୍ତି । କିନ୍ତୁ ଏଇଠି, ଏ ଚାରି ଘର ଭିତରେ ତମେ ବୋଲି ଡାକିବା ପାଇଁ ସାହସ ହେଉ ନାହିଁ ।

ଶିଖା ॥ ନ ଡାକିବା ଯାଏଁ କେମିତି କହିବ ? (ହସି ଦେଇଛନ୍ତି)

ମୁକ୍ତିକାନ୍ତ ॥ (ଅସହାୟ ହୋଇ ନିଜକୁ ବୁଝି ନପାରି) ତମେ ଠିକ୍ ହସପିଟାଲ୍‌ର ସେଇ ନର୍ସଟା ଭଳି······।

ଶିଖା ॥ ନର୍ସଟା ଠିକ୍ ମୋ ଭଳି···?

ମୁକ୍ତକାନ୍ତ ॥ ଠିକ୍ ତମଭଳି ଏମିତି ଗୁଁ ଆଣିହଏ । ଏମିତି ଶାଢ଼ୀ ପିନ୍ଧେ । ଆଉ ଏମିତି ହସେ, ଆଉ ବେଳେ ବେଳେ କଣ କରେ ଜାଣ ? ମତେ ଗୁଣ୍ଡରେ ଜାକିଧରି ଚୁମା ଦିଏ । ମତେ ଭାରି କୁତୁକୁତୁ ଲାଗେ ।

ଶିଖା ॥ ସତେ ?

ମୁକ୍ତକାନ୍ତ ॥ ଜାଣନ୍ତି ? (ଆଗ୍ରହରେ କହି ପକାଇଛି) ବେଳେ ବେଳେ ସେ କାନ୍ଦେ ମଧ୍ୟ । ସିଏ କାନ୍ଦିଲେ ମତେ କିନ୍ତୁ ଭଲ ଲାଗେନା···। ମୁଁ ତା'ର ଲୁହ ପୋଛି ଦିଏ। ମୋତେ କେମିତି କେମିତି ଲାଗେ···ମାନେ...ବେଳେ ବେଳେ ଲାଗେ ସିଏ ଯେମିତି ମୋର ଲାଗେ ମା'···ପୁଣି ବେଳେ-ବେଳେ ସିଏ ଯେମିତି ମୋର ଭଉଣୀ···ପୁଣି କେତେ ବେଳେ କଣ ଯେ ଲାଗେ......
(ପୁଣି ଅବୁଝା ପୃଥିବୀ ଭିତରକୁ ଫେରିଗଲା)

ଶିଖା ॥ (ଟ୍ରେ ନେଇ ଉଠିଲା) ଚାଲନ୍ତୁ, ଆଜି ସମୁଦ୍ର ଯିବା । ସମୁଦ୍ରକୁ ଚାହିଁଲେ ଆଉ କଷ୍ଟ ଲାଗିବନି ।

ମୁକ୍ତକାନ୍ତ ॥ ସମୁଦ୍ର ?

ଶିଖା ॥ କ'ଣ ଭାବୁଛନ୍ତି ?

ମୁକ୍ତକାନ୍ତ ॥ ତୁମେ ସେ ଶ୍ରୀକାନ୍ତ ବାବୁଙ୍କ ବାହା ହେବ ?

ଶିଖା ॥ ହଁ, କିଏ କହିଲା ଆପଣଙ୍କୁ ?

ମୁକ୍ତକାନ୍ତ ॥ ଗଜେନ୍ଦ୍ର ଗୁମାସ୍ତା କହିଲେ । ମୁଁ କିନ୍ତୁ ବିଶ୍ୱାସ କରି ପାରିଲିନି । ତମେ ଆଉ ଶ୍ରୀକାନ୍ତ ବାବୁ······ମାନେ ଠିକ୍ ଯେମିତି ଜମିଲା ନାହିଁ...ମାନେ···

ଶିଖା ॥ ଅନେକ ଅସମ୍ଭବ ବି ବେଳେ ବେଳେ ସମ୍ଭବ ହୁଏ ମୁକ୍ତକାନ୍ତ ବାବୁ !

ମୁକ୍ତକାନ୍ତ ।। କିନ୍ତୁ ଏଇଠି ବିବାହଟା··· ମୋର ତ ମନେ ହୁଏ ଶ୍ରୀକାନ୍ତ ବାବୁ ଜୀବନଟାକୁ ନିଶା ଆଉ ପଇସା ବୋଲି ଭାବୁଛନ୍ତି । ଗୁଡ଼ାଏ ଟଙ୍କା ଅଛି ତାଙ୍କର, ନାଇଁ ?

ଶିଖା ।। ଗୁହାଁଲେ ମୋ' ଭଳି ଦଶଟା ଶିଖା ତାଙ୍କ ଘରକୁ ଖରଦ ହୋଇଯିବେ । ଜାଣିଛନ୍ତି ? ମତେ କିଣିବା ପାଇଁ ସେ ଭାଇଙ୍କୁ କିଣିବା ପାଇଁ ଆରମ୍ଭ କଲ୍ଣି ।

ମୁକ୍ତକାନ୍ତ ।। କିନ୍ତୁ ତମେ ସେଥିରେ ରାଜି ହୋଇଛ କାହିଁକି ଯେ ?

ଶିଖା ।। ଉପାୟ ନାହିଁ । ମୁଁ ତ ଆଉ ଆମେରିକାରେ ରହୁନି । ଏଇଟା ଓଡ଼ିଶା ।

ମୁକ୍ତକାନ୍ତ ।। ମତେ ଆଶ୍ଚର୍ଯ୍ୟ ଲାଗେ ଏଇଠି ଏଇ ସଭ୍ୟତାରେ ଝିଅମାନଙ୍କୁ ବିକ୍ରି କରାଯାଏ କାହିଁକି ? ଯଦି ବା ବିକା ହୁଏ, ତାକୁ ବାହାଘର କହନ୍ତି କାହିଁକି ? ଆଉ ଯିଏ ବାହା ନ ହୁଏ, ଆଉ ଯା'ର ପୁଅ ଝିଅ ହୁଏ···ଯେମିତି ମୋ ମା'ର ମୁଁ ସନ୍ତାନ···( ଉତ୍ତ୍ୟକ୍ତ ହେଲ ଭଳି ) ମୁଁ କାହିଁକି ଜାରଜ ସନ୍ତାନ ହେବି ? ସଭ୍ୟ ଜଗତରେ ତା ହେଲେ ସମସ୍ତେ ଅମଣିଷ···ସମସ୍ତେ...(ହଠାତ୍ ମୁଣ୍ଡରେ ଗୋଟିଏ ଯନ୍ତ୍ରଣା ଅନୁଭବ କରି) ଓଃ ?·····

ଶିଖା ।। ମୁକ୍ତକାନ୍ତ ! କଣ ହେଉଚି ତୁମର ? (ଧରି ପକାଇଛି ଓ ଚଉକି ଉପରେ ବସାଇ ଦେଇଛି)

ମୁକ୍ତକାନ୍ତ ।। ହଠାତ ମୋ' ମୁଣ୍ଡଟା...

ଶିଖା ।। କେମିତି ଲାଗୁଛି ?

ମୁକ୍ତକାନ୍ତ ।। କ'ଣ ଯେ ହୋଇ ଯାଉଛି ଗୁଣ୍ଡିଟା···

ଶିଖା ।। ଆପଣ ଗୁଲନ୍ତୁ ଶୋଇଯିବେ ।

ମୁକ୍ତକାନ୍ତ ।। ମୁଁ ଯେମିତି ଏ ବିବାହ କଥା ଶୁଣିଲି, ମତେ କେମିତି କେମିତି ଲାଗିଲା । ଆଚ୍ଛା, ମତେ ସମସ୍ତେ ଘୃଣା କରନ୍ତି କାହିଁକି ?

।। ଷଷ୍ଠ ।।

ଶିଖା ॥ (ମୁଣ୍ଡର ବାଳଗୁଡ଼ାକୁ ଅଣ୍ଡାଳ ଦେଇ ଦେଇ ଯେମିତି ଗ୍ରେଟ ପିଲାଙ୍କୁ ଗେଲ କରନ୍ତି) କାହିଁ ନାହିଁ ତ, ମୁଁ ତ ଆପଣଙ୍କୁ ଘୃଣା କରେନ ।

ମୁକ୍ତିକାନ୍ତ ॥ ଏଇ ସହରକୁ ଆସିଲା ଦିନୁ ଏଇଠି ଏଇ ଅଗଣିତ ଲୋକଙ୍କ ସ୍ରୋତ ଭିତରେ ମୁଁ ଦେଖୁଛି, ଯେମିତି ସମସ୍ତେ ନିଷ୍ଠୁର ।

ଶିଖା ॥ ଆପଣଙ୍କର ନିଷ୍ଠୁର ଆଜ କଣ ହୋଇଛି । କ'ଣ ହୋଇଛି କହିଲେ ?

ମୁକ୍ତିକାନ୍ତ ॥ ମତେ ସମସ୍ତେ ଧମକ ଦେଉଛନ୍ତି, ଗାଳି ଦେଉଛନ୍ତି । ସେ ଦିନ ଭୁମ ହାଇ ଆଉ ଆଜ ଗୁମାସ୍ତା । କିନ୍ତୁ କାହିଁକି ? ସତ କହିବା କ'ଣ ଅପରାଧ ?

ଶିଖା ॥ ନା । ସରଳ ହେବା ଏ ପୃଥିବୀରେ ଅପରାଧ ।

ମୁକ୍ତିକାନ୍ତ ॥ ନା, ମୁଁ ଅବୈଧ, କାରଣ ବୋଲି ସମସ୍ତେ ମତେ ଘୃଣା କରୁଛନ୍ତି । (କାନ୍ଦି ପକାଇଲା)

ଶିଖା ॥ ଛି, ଏମିତି ହୁଅନ୍ତି ନା ? କିଏ କହିଲା ଆପଣ କାରଜ ? ଆପଣ ସୁନ୍ଦର, ଆପଣ ସରଳ, ଶିଶୁଭଳି ସରଳ ।

ମୁକ୍ତିକାନ୍ତ ॥ (ମୁକ୍ତିକାନ୍ତ ଉଠି ଠିଆ ହେଲା) ଆଚ୍ଛା ଶିଖା, ମୁଁ କଣ ତମକୁ ଆଗରୁ ଚିହ୍ନିଥିଲି ? (ଟିକିଏ ରହି) ମୋର ମନେ ହେଉଛି, ଯେମିତି ବହୁତ ଦିନ, ଅନେକ ଦିନରୁ ତମ ସହିତ ମୋର ପରିଚୟ ଅଛି । ତମେ ଅନେକ ଦିନରୁ ଏଇଠି ଟିକିଏ ସ୍ନେହ ଆଉ ମମତା ପାଇଁ ବୁଲୁଛ ଏବଂ ତମକୁ କେହି ସେତିକିକ ଦେଉ ନାହାନ୍ତି । ଏବଂ ମୁଁ... ଏବଂ ତମେ...ଆମେ ସବୁ...ସମସ୍ତେ ଖାଲି ଟିକିଏ ଟିକିଏ ସ୍ନେହ ପାଇଁ...

ଶିଖା ॥ ସ୍ନେହ ? ସେଇ ଆକାଶଟାକୁ ଚାହଁ, ସେଇଟା କେମିତି ଆସ୍ତେ ଆସ୍ତେ ଅନ୍ଧାର ଭିତରେ ବୁଡ଼ି ଯାଉଛି । ଆମେ

ସେମାନଙ୍କୁ ହତ୍ୟା କରନ୍ତେ । ଏଇଠି ନିଷ୍ଠୁରତା ଛଡ଼ା ଅନ୍ୟ କିଛି ନାହିଁ । ଆସନ୍ତୁ ମୁଁ ଆପଣଙ୍କୁ ନେଇ ଘରେ ଥୁଇଦେଇ ଆସିବି । (ମୁକ୍ତିକାନ୍ତକୁ ନେଇ ଘରକୁ ଗଲାବେଳେ) ହରିଆ, ତା ଟ୍ରେଟା ନେଇ ଯା । (ଶିଖା ମୁକ୍ତିକାନ୍ତକୁ ନେଇ ଭିତରକୁ ଯାଇଛି ଓ ହରିଆ ଆସି ଟ୍ରେ ନେଇ ଯାଇଛି, ଘର ଭିତରୁ ଘଣ୍ଟା, ଆଳଟିର ଶବ୍ଦ, ଶଙ୍ଖ ଫୁଙ୍କିବା ଶୁଭିଲା । ମଞ୍ଚ କେତେ ସମୟ ଖାଲି । ବାହାରୁ ଆସିଲେ ତପନ ଓ ଶ୍ରୀକାନ୍ତ)

ତପନ ॥ ତମେ ଟିକିଏ ଅପେକ୍ଷା କର ଶ୍ରୀକାନ୍ତ, ମୁଁ ଲୁଗା ବଦଳେଇ ଦେଇ ଆସୁଛି । କିଛି କଫି ପଠେଇ ଦେଉଛି ।

ଶ୍ରୀକାନ୍ତ ॥ ଥାଉ ସାର୍, ମୁଁ ଏଇଠି ବସିଛି ।

ତପନ ॥ ଆଚ୍ଛା !

(ତପନ ଖାଇଛି, ମୁକ୍ତିକାନ୍ତକୁ ତାର ଘରେ ଥୁଇ ଦେଇ ଫେରି ଆସିଛି ଶିଖା, ଶ୍ରୀକାନ୍ତକୁ ଦେଖି ଅଟକି ଯାଇଛି)

ଶିଖା ॥ Hallow. ଶ୍ରୀକାନ୍ତ ! ଶିକାରରୁ କେତେବେଳେ ଫେରିଲ ?

ଶ୍ରୀକାନ୍ତ ॥ ଏଇ ତ ଫେରୁଛି ।

ଶିଖା ॥ ଭଇ !

ଶ୍ରୀକାନ୍ତ ॥ ଉପରେ । ଆଉ ସବୁ ଖବର ?

ଶିଖା ॥ ଭଲ । କ'ଣ ସବୁ ଶିକାର କଲ ?

ଶ୍ରୀକାନ୍ତ ॥ ଶିକାର ? (ହସିତ) ଜୀବନଟା ଗୋଟାଏ ପରେ ଗୋଟାଏ ଶିକାର ବୋଲି ମୋର ଧାରଣା ।

ଶିଖା ॥ ଖୁବ୍ ଭଲ ଧାରଣା କରୁଛ । ହେଲେ ତପନ ଭାଇଙ୍କୁ ନଷ୍ଟ କରି ଦେବାରେ କ'ଣ ମିଳୁଛି ତମକୁ ?

ଶ୍ରୀକାନ୍ତ ॥ ତପନ ଭାଇ ? ତପନ ଭାଇଙ୍କୁ ମୁଁ ନଷ୍ଟ କରି ଦେଉଛି ? କ'ଣ ତମେ କହୁଛ ଶିଖା ?

ଶିଖା ॥ କ'ଣ କହୁଛି ବୁଝିପାରୁନ ?

ଶ୍ରୀକାନ୍ତ ॥ ତମ ଭାଇ ଜୀବନରେ ଭାରି ଦୁଃଖୀ । ତମେ ତ ଏ କଥା ଜାଣ ଶିଖା । ପାରିବାରିକ ଜୀବନଟା ନଷ୍ଟ ହୋଇଯିବା ପରେ......

ଶିଖା ॥ ତମେ ତାଙ୍କର ପାରିବାରିକ ଜୀବନଟାକୁ ଏଇଠି ନଷ୍ଟ କରି ଦେଇଛ । ନହେଲେ ଭାଇ ମୋର ଖୁବ୍ ଭଲ ଥିଲେ ।

ଶ୍ରୀକାନ୍ତ ॥ ତମେ ତ ଏକଥା କହିବ ନିଶ୍ଚୟ । କାହିଁକି ନା, ତମର ମୋ ଉପରେ ଧାରଣା ଅଲଗା ।

ଶିଖା ॥ ଭାଉଜ ଯିଆଡେ ପନ୍ଦର ଦିନ ହେଲା ଅସୁସ୍ଥ । କାହିଁକି ସେ ତମେ ତାଙ୍କୁ ଶିକାର ଲୋଭ ଦେଖାଇ ଜଙ୍ଗଲ ନେଇ ପଳାଇଥିଲ......?

ଶ୍ରୀକାନ୍ତ ॥ ମୁଁ ନେଇ ପଳାଇଥିଲି ? ହଁ ତୁମ ସହିତ ମୋର ସମ୍ପର୍କଟା ଅଲଗା ହେବାକୁ ଯାଉଛି । ନ ହେଲେ, ଏ' କଥାର ମୁଁ ଉଚିତ୍ ଜବାବ୍ ଦେଇଥାନ୍ତି ।

ଶିଖା ॥ ହଁ, ତମେ ଦେଇଥିବା ମୂଲ୍ୟବାନ ହାରଟା ମୁଁ ପାଇଛି । ଆଜି ପାଇଲି । ଅନେକ ଅନେକ ଧନ୍ୟବାଦ ।

ଶ୍ରୀକାନ୍ତ ॥ ଆଜିକାଲିର ବଜାର Rateରେ ତାର ଦାମ୍ ଦଶହଜାରରୁ କମ୍ ହେବନି ।

ଶିଖା ॥ ଜାଣେ । ତମେ ସେଇଟା କଲିକତାରୁ ଆଣିଥିଲ ।

ଶ୍ରୀକାନ୍ତ ॥ ହାରଟା ତମେ ଆଜି ପାଇଲ ? ଆଜି ଗଜ ଗୁମାସ୍ତା ତା' ହେଲେ......

ଶିଖା ॥ ଗଜ ଗୁମାସ୍ତା ହାତରେ କାହିଁକି ପଠାଇଲ ? ନିଜର ସାହସ ନାହିଁ ?

॥ ଅଣସ୍ତୁଣ ॥

ଶ୍ରୀକାନ୍ତ ।। ଠିକ୍ ତା ନୁହେଁ, ତମେ ତ ମୋତେ ଜାଣ...ତେବେ ସାର୍ ଦିନେ କହୁଥିଲେ ତୁମର ପୁରୁଣା ହାରଟା ଛିଣ୍ଡି ଯାଇଥିଲା ନା ?

ଶିଖା ।। ଆମ୍ଭେ ଏଥି ଭିତରେ Picnic କରି ଯାଇଥିଲୁ କୋଣାର୍କ । କୋଣାର୍କରେ ଘଣ୍ଟାଏ ବିତେଇ ଫେରିଲୁ ।

ଶ୍ରୀକାନ୍ତ ।। କ'ଣ, ସାଇକୋଲଜି ପିଲ୍ମ ? ବେଶ୍ ଜମିଥିବ ତ ?

ଶିଖା ।। ତମର ଈର୍ଷା ହେଉନି ? ବାଜେ ଟୋକାଙ୍କ ସାଙ୍ଗେ ମୁଁ ସତ କଟାଉଛି ବୋଲି ?

ଶ୍ରୀକାନ୍ତ ।। ମୁଁ ଏତେଟା Mean ନୁହେଁ । ଅନ୍ତତଃ ତମକୁ ଚିହ୍ନିବାରେ ମୋ'ର ଭୁଲ ହେବନି ।

ଶିଖା ।। ଅନ୍ତତଃ ସନ୍ଦେହ ହେବା କଥା ?

ଶ୍ରୀକାନ୍ତ ।। ମୋତେ ନୁହେଁ । ଗୁଲ—ଦିନେ ଜିପ୍ ନେଇ ନଈକୂଳ ଯିବା । ଚିଲିକା କୂଳ ଖୁବ୍ ବଢ଼ିଆ ଡାକବଙ୍ଗଳା......।

ଶିଖା ।। ଯିବା ।

ଶ୍ରୀକାନ୍ତ ।। କେବେ ଯିବା ? ବାଲୁଗାଁରେ ମୋର Construction Work ଚାଲିଛି । ମୁଁ ୨୦ ତାରିଖ ବେଳକୁ ଯାଇପାରେ । ସୁବିଧା ହେବ ?

ଶିଖା ।। ଏମିତି ବାଉଳା ହୁଅନି ମ । ୨୦ ତାରିଖ ଆସୁ...ଯିବା ତ...

ତପନ ।। (ଭିତରୁ ଆସି) Oh, I am sorry. Disturb କଲି ।

ଶ୍ରୀକାନ୍ତ ।। No. Sir, by no means.

ତପନ ।। ଆଉ ଖବର କ'ଣ ଶିଖା ? Everything OK ?

ଶିଖା ।। ଭାଉଜଙ୍କ ଅବସ୍ଥା ଖରାପ । ବେଳେ ବେଳେ ମୂର୍ଚ୍ଛା ହୋଇ ଯାଉଛନ୍ତି ।

।। ସପ୍ତମ ।।

ତପନ ।। ସେଥିରେ ମୁଁ କ'ଣ କରିବ ? ଗୁଡ଼ାଏ ପୂଜା, ଉପବାସ କଲେ ଯାହା ହୁଏ । କହିଲେ କ'ଣ ହେବ ? ମଣିଷର ଚରିତ୍ର ତ !

ଶିଖା ।। ତମେ ଟିକଏ ଡ଼ାକ୍ତର ମହାନ୍ତିଙ୍କୁ ଖବର ଦିଅ ଭାଇ ।

ତପନ ।। ଭାଉଜଙ୍କୁ କହନ୍ତୁ, ସେଇ ନେଉଳ ବାବାର ଜେଜିଁରିଆ ପିଇବେ ! ନେଉଳ ବାବା ତ ଏଇ ପୃଥିବୀରେ ଜଣେ ଲୋକ·· ବାତ, ପିତ୍ତ, କଫଠାରୁ ଆରମ୍ଭ କରି Cancer ପର୍ଯ୍ୟନ୍ତ ସବୁ ରୋଗ ଭଲ କରି ଦେଉଛନ୍ତି ।

ଶିଖା ।। ତମେ ଗୋଟାଏ ଅଛା କ'ଣ କରୁଚ ମ ଭାଇ ? ରଞ୍ଜନ ଭାଇ ପାଖକୁ ଖବର ଗଲାଣି ।

ତପନ ।। ଅରେ, ତୁ ଏ ପର୍ଯ୍ୟନ୍ତ ଶ୍ରୀକାନ୍ତ ପାଇଁ ଜଳଖିଆ ବନ୍ଦୋବସ୍ତ କରିନୁ ? We are hungry, really hungry.

ଶିଖା ।। ହଁ ଯାଉଛି । (ଯାଉଥିଲା) ଆଉ କଫି ?

ତପନ ।। ତୁ ଆସିବା ଦରକାର ନାହିଁ । ତୁ ବରଂ ପଢ଼ । ହରିଆ ହାତରେ କିଛି ଆମଲେଟ୍, କଟା ପିଆଜ ଏବଂ ଆଳୁଚପ୍ ପଠାଇ ଦେ ।

ଶିଖା ।। ତୁମେ ଫୋନ୍ କରି Doctor Mohantyଙ୍କୁ ଗୋଟିଏ Call ଦେବନି ? ଭାଉଜଙ୍କ ଅବସ୍ଥା ସିଆଡ଼େ......

ତପନ ।। ଆଚ୍ଛା ମୁଁ ସେ କଥା ବୁଝୁଛି । ତୁ ଏକଥା ବୁଝ । କବାଟଟା ବାପାଙ୍କ Room ପଟୁ ବନ୍ଦ ଅଛି ତ ? Lock up କରିଦେ । (ଆସି ବସିଛି) Would you like to......bathroomକୁ ଯାଇ fresh ହୋଇ ଆସିବ ?

ଶ୍ରୀକାନ୍ତ ।। No Sir ଥଣ୍ଡାଟା କମି ଆସିଲାଣି ।

ତପନ ।। ଆଜି ପଢନାପୂକ କ'ଣ ଖୁବ୍ ବଡ଼ ବଡ଼ କଥା କହୁଛି !

॥ ଏକପୁଷ୍ପ ॥

ଶ୍ରୀକାନ୍ତ ॥ ଜାଣି ନାହାନ୍ତି ଯେଣୁ ନର ପ୍ରଭବ, ତେଣୁ ତାଙ୍କର······ ହସିଲେ ।

ତପନ ॥ କଏ ଗୋଟାଏ ନୂଆ ହାବୁଡ଼ ଯାଇଥିବେ ।

ଶ୍ରୀକାନ୍ତ ॥ ଆଜକାଲ ଘରଟା ବଦଳେଇ ଦେଇଛି Sir······ସେଇ Convent ପାଖରେ Hotel ମାଉନା ଆରପଟେ ଯାଇ···

ତପନ ॥ ବଜାତ୍ ଟୋକି । Feel like murdering her !

ଶ୍ରୀକାନ୍ତ ॥ କୋଉ ଗୋଟାଏ ତେଲ କମ୍ପାନୀର Sales ଅଫିସର ଜୁଟି ଯାଇଛି । ଶୁଣିଲି, ଟୋକା ସେଇଠି ଯାଇ....

ତପନ ॥ କଏ, ସେଇ ଯୋଉ, ଗୋରା ହୋଇ, ପତଳା ହୋଇ, ଚକ୍‌ଲେଟ ରଙ୍ଗର ପ୍ୟାଣ୍ଟ······ସେଇ ଟୋକା ?

ଶ୍ରୀକାନ୍ତ ॥ ବାସ୍, ବାସ୍ । କଲିକତାରୁ ନୂଆ ବଦଳି ହୋଇ ଆସିଛି । କ'ଣ କହୁଥିଲି ତାର ସଂପର୍କୀୟା ବୋଲି ।

ତପନ ॥ Bogus ! ସଂପର୍କ କଛି ନୁହେଁ । ସେଇ ଟୋକାକୁ ଫସେଇବାକୁ ଚାହୁଁଛି । (ହରିଆ ଟ୍ରେରେ ଗ୍ଲାସ ଓ ମଗ୍ ନେଇ ଆସିଛି, ରଖିଛି ଆମଲେଟ୍ ଓ ଆଲୁଚପ୍ସ...)

ହରିଆ ॥ ଆଣୁଚି ବାବୁ ····ଶିଖା ଦେଈ କରୁଛନ୍ତି ।

ତପନ ॥ ଶିଖା ଦେଈ କରୁଛନ୍ତି ? କାହିଁକି ? ମା' ?

ହରିଆ ॥ ମା'ଙ୍କର ପରା ଦେହ ଖରାପ ! ଆଠଦିନ ହେଲା···

ତପନ ॥ ଓଃ ଶୋଇ ଯାଇଛନ୍ତି ନା ? ବେଶ୍ ଭଲ ।

ହରିଆ ॥ ଶୋଇବେ କାହିଁକି ମ ? ସେଇଠି ସୋଫାରେ ଘରେ ସେମିତ...

ତପନ ॥ ଓଃ ! ପତିପରାୟଣା ନାରୀ !!

ହରିଆ ॥ ବାବୁ !!

ତପନ ॥ ଘଗ୍ ସଲ୍ ଏଠୁ । ଜଲ୍‌ଦି ଜଳଖିଆ ଯାଇ ଆଣ ।
(ହରିଆ ଯାଇଛନ୍ତି)

ଶ୍ରୀକାନ୍ତ ॥ ଆସ୍ତ ପସ୍ତ ଗୋଟାଏ ସ୍କଚ୍ ବନ୍ଦଯାଇଛି । ଖୋଲି ଦେବ ?

ତପନ ॥ ଖୋଲି ଦିଅ I want to forget, yes.
(ଶ୍ରୀକାନ୍ତ ଚମଡ଼ା ବ୍ୟାଗରୁ ବାହାର କରି ଗିଲାସରେ ଢାଳିଲେ) Really ଆପଣଙ୍କ ପାଇଁ ମୁଁ ଖୁବ୍ ଦୁଃଖୀ Sir......ଆପଣଙ୍କ ଭଳି Talent.

ଶ୍ରୀକାନ୍ତ ॥ Just ଆଉ ଗୋଟାଏ drop Sir ଯେତେ ହେଲେ ଆପଣ Hero of the play.

ତପନ ॥ କିନ୍ତୁ ତମେ ନଥିଲେ ମୋ' ଜୀବନଟା ଅନେକ ଦିନରୁ...
ଓଃ କି ଯନ୍ତ୍ରଣା !

ଶ୍ରୀକାନ୍ତ ॥ ଆପଣ କାହିଁକି ଯେ ସେଠି ବାହା ହେଲେ । ମୁଁ ଜାଣେ ପର Sir ଏଇ ରଂଜନ ପଟ୍ଟନାୟକ ଘରଟା ଭାରି Ortho-dox......। ଖାଲି ଟଙ୍କା ଥିଲେ କ'ଣ ହେବ ସାର୍, ଫୁର୍ତ୍ତି କରି ଜାଣି ନାହାନ୍ତି । ବଞ୍ଚିବାଟା ତ ପୁଣି ଗୋଟାଏ କଳା One should know it (ମଦ glass ବଢ଼ାଇ) ନିଅନ୍ତୁ Sir.

ତପନ ॥ Cheers (ବସିଲେ)

ଶ୍ରୀକାନ୍ତ ॥ Cheers (ପିଇଲେ) ହଁ ସେ ଆସ୍ତ ପଟ୍ଟନାୟକ ପାଇଁ କିଛି ଗୋଟାଏ ବ୍ୟବସ୍ଥା କରିବା ଦେଖନ୍ତୁ ।

ତପନ ॥ ମୋର Public image ନଷ୍ଟ କରି ଦେବାକୁ ବସିଛି ।

ଶ୍ରୀକାନ୍ତ ॥ ଆପଣଙ୍କର ସମ୍ମାନ ନଷ୍ଟ କରିବ ଆସ୍ତ ପଟ୍ଟନାୟକ ।

ତପନ ॥ ଏଇଠି ଆସି ଗୋଟାଏ Scene create କରିପାରେ ।

ଶ୍ରୀକାନ୍ତ ॥ କହୁଥିଲି ?

॥ ଡେସ୍କଷ୍ଟି ॥

ତପନ ॥ କିଏ ଜାଣେ ? ଭାବଥିବ ଏମିତ ହେଲେ ମୁଁ ଡ଼ରି ଯାଇପାରେ ।

ଶ୍ରୀକାନ୍ତ ॥ Blackmailing କରୁନ ତ ? ଆଚ୍ଛା, କିଛି ଟଙ୍କା ପଇସା..

ତପନ ॥ ନେଇଛି । ଯଥେଷ୍ଟ ନେଇଛି । ପ୍ରାୟ ୨୦/୨୫ ହଜାରରୁ କମ୍ ନୁହେଁ ।

ଶ୍ରୀକାନ୍ତ ॥ ୨୦/୨୫ ହଜାର । ଆପଣ Sir......really...... ଏତେ imotional ହେଲେ ଚଳିପାରିବେ ?

ତପନ ॥ ତମେ ମୋର Private life ବିଷୟରେ କିଛି ଜାଣିନ ଶ୍ରୀକାନ୍ତ, ଘରକୁ ଫେରିଲେ ମୁଁ Mental tension ଭିତରେ ବଞ୍ଚି ରହେ ଆଦୌ ମାନସିକ ଶାନ୍ତି ନାହିଁ । ଆଉ ଦୁର୍ଘଟଣାପୂର୍ବକ ଏମିତି ଗୋଟାଏ ସମୟରେ...ମାନେ ଯାହା କହନ୍ତି, ଦୁର୍ବଳ ମୁହୂର୍ତ୍ତରେ···

ଶ୍ରୀକାନ୍ତ ॥ ତଥାପି ଏଇ ଦୁଇ, ତିନ ମାସ ଭିତରେ···କ'ଣ କହୁଛି ଆଜକାଲି ।

ତପନ ॥ ସେଇ ଡ଼ାକବଙ୍ଗଳା incident ପରଠାରୁ ବିଗିଡ଼ି ଯାଇଛି, କହୁଛି ମୋ' ନାଁରେ କେଶ୍ କରିବ ।

ଶ୍ରୀକାନ୍ତ ॥ (ଖୁବ୍ ଜୋରରେ ହସି ଉଠିଲେ) ଆଉ ଗୋଟାଏ Peg ନିଅନ୍ତୁ, Sir ଯାହାହେଉ ଗୋଟାଏ joke ଶୁଣାଇଲେ ଆପଣ । କଣ କହୁଛି, Case କରିବ ।

ତପନ । ଏଇଟା ସେ Oil Company ବାଲର କାରସାଦି ନୁହେଁ ତ ? ସେ ଯଦି ମୋତେ Blackmail କରିବା ପାଇଁ ଏ କଥା କହୁଥାଏ ।

ଶ୍ରୀକାନ୍ତ ॥ ଆପଣ ଚୁପ୍ ରହନ୍ତୁ Sir. ମୁଁ ସେମାନଙ୍କ କଥା ବୁଝୁଛି । ଦରକାର ପଡ଼ିଲେ ପୁରା ନିଖୋଜ କରି ଦିଆଯିବ, ଆଉ ଖୋଜିଲେ ଠିକଣା ମିଳିବନି ।

॥ ଚତୁସ୍ତମ୍ଭ ॥

ତପନ ।। ତମେ ବୁଝୁନା ଶ୍ରୀକାନ୍ତ । ଏଇଟା ମୋର Public image କଥା ତ ମାନେ ତମେ ତ ଜାଣ, ଆଜ୍ଞା ପଟ୍ଟନାୟକ କେମିତି ବେସରମ ଝିଅ । ଏଇଠି କମ୍ପା ଅଫିସ ପହଞ୍ଚ ଯଦି ଗୋଟାଏ Scene create କରି ବସେ । ତା' ହେଲେ ତ ସବୁ ସରିଯିବ ।

ଶ୍ରୀକାନ୍ତ ।। ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ Sir......

ତପନ ।। ଯଦି ଘରେ ପହଞ୍ଚଯାଏ । କାଲି ପୁଣି ବଡ଼ ଶଳା ଆସି ପହଞ୍ଚ ଯାଇପାରେ । ଯଦି ଏମାନେ ଶକ୍ତାର ଦେହ ଖରାପ ବୋଲି ଖବର ପଠାଇଥିବେ ।

ଶ୍ରୀକାନ୍ତ ।। ହାତ ଲେଖା ଚିଠି କେଇଟି ତା' ପାଖରେ ରହିଯାଇଛି ।

ତପନ ।। ଅନେକ Dangerous ଚିଠି ସବୁ । ମାନେ ତମେ ଭାବି-ପାରୁଛ ଶ୍ରୀକାନ୍ତ ? ମାନ-ସମ୍ମାନ ଉପରେ କି ଭୟଙ୍କର Damage ଯେ ହେବ......ଏମାନେ ଯଦି C. B. I. ଲଗେଇ ଦିଅନ୍ତି, ନା ହେଲେ ତ ପୁଣି କଥା ଅଲଗା ବୋଲି ଜାଣ । ମାନେ ଗୃହକର ଉପରେ ବଥା । Vigilance ବାଲା ଖାଲି ଆମର ଦୋଷ ଧରିବା ପାଇଁ ଠାକି ବସିଛନ୍ତି । (ହରିଆ ଆମ୍‌ଲେଟ୍ ଓ ଚପ୍ ଧରି ଆସିଛି । ଉତ୍ତରରେ ଯାଉଛି) ନିଅ ଶ୍ରୀକାନ୍ତ ।

ଶ୍ରୀକାନ୍ତ ।। ସେଥିପାଇଁ Sir ଏଇ କେଇଟି ଦିନ ହେଲା ମୁଁ ଲକ୍ଷ୍ୟ କରୁଛି ଆପଣଙ୍କର ମନଟା—ମାନେ ଗୋଟାଏ ପ୍ରକାର ହତାଶା— ଯେମିତି ସ୍ୱାସ୍ଥ୍ୟ ଖରାପ ହେଲେ ହୁଏ ।

ତପନ ।। ମାନସିକ ଯନ୍ତ୍ରଣାର ଗୋଟାଏ ସୀମା ଅଛି । କିଛିଦିନ ହେଲା ମୋତେ ଲାଗୁଛି, ମୁଁ ଯେମିତି ପୃଥିବୀରେ ଖୁବ୍ ଏକାକୀ ହୋଇ ଯାଉଛି । Terribly isolated କେହି ମୋ କଥା ବୁଝିପାରୁ ନାହାନ୍ତି । ଖାଲି ଭୁଲ୍ ବୁଝାବଣା......ଅଥଚ

ନିଜେ ନିଜକୁ ଦେଉଥିବା ଯନ୍ତ୍ରଣାରେ ମୁଁ ଯେମିତି ପ୍ରତିଦିନ ଆତ୍ମହତ୍ୟା କରି ଚାଲିଛି ।······

ଶ୍ରୀକାନ୍ତ ॥ Marriage fail କରିଗଲା, ଏଇଥି ପାଇଁ Sir ବାହା ହେବା ପୂର୍ବରୁ Partnerଟିଏ ବାଛିବା ବିଷୟରେ ମୁଁ ଖୁବ୍ ସତର୍କତା ଅବଲମ୍ବନ କରିବାକୁ ଚାହୁଁଛି । ବାବାଙ୍କର ଗୋଟାଏ ବୋଲି ପୁଅ । ଆଜି ପ୍ରଚୁର ସମ୍ପତ୍ତି ଦେଖି ଅନେକ ପ୍ରସ୍ତାବ, ଅନେକ ଯୌତୁକର ଲୋଭ ଆସି ପହଞ୍ଚୁଛି । ମୁଁ କିନ୍ତୁ ଚାହୁଁଛି······ (ହସି ଦେଇ) ଆପଣ ତ ଜାଣନ୍ତି Sir ······

ତପନ ॥ ରିଲ୍ଲା ! ( ସ୍ୱଗତୋକ୍ତି ) ମୋର ମନେ ହେଉଛି ଏ ଝିଅଟା ଯେମିତି ସବୁ ଅଶାନ୍ତିର କାରଣ । ନିଜକୁ କ'ଣ ଯେ ଭାବନ୍ତି ଏ ଝିଅମାନେ । ସକାଳୁ ଉଠି ପୂଜାପାଠ କର । ରାତି ନଅଟା ପୂର୍ବରୁ ଘରକୁ ଫେରିଆସ ।

ଶ୍ରୀକାନ୍ତ ॥ ମୁଁ ଆଦୌ ବୁଝି ପାରେନା Sir, ଏତେ ଆଦର୍ଶ, ପରମ୍ପରା, ଚରିତ୍ର ଆଉ ସତୀତ୍ୱକୁ ନେଇ କ'ଣ ପାଆନ୍ତି ସେମାନେ ?

ତପନ ॥ ତମେ କହିପାରିବ ଶ୍ରୀକାନ୍ତ, ଚରିତ୍ରର ପ୍ରକୃତ ସଜ୍ଞାଟା କ'ଣ ? ଖାଲି ଓଢଣା ଟାଣି ଘର କୋଣରେ ବସି ରହିଲେ ଚରିତ୍ରଟା କଣ ହୀରା ଭଳି ଚକ୍ ଚକ୍ କରେ ? ଏଁ ? Like a diamond ?

ଶ୍ରୀକାନ୍ତ ॥ ଅନେକ ଝିଅଙ୍କର ଧାରଣା ସେଇଆ । ସେମାନେ ଭାବନ୍ତି ପୁରୁଷ ବନ୍ଧୁଙ୍କ ସଙ୍ଗେ ଟିକିଏ କଥାବାର୍ତ୍ତା କଲେ ପାର୍ଟି କିମ୍ବା Picnicରେ ଗଲେ ନାଁଖି ସମାଜ ମାଟି ତଳକୁ ଚାଲିଯାଏ ।

ତପନ ॥ Bougs. ହଲେ ରିଲ୍ଲା କି ଖୁସିଣ ଭାବେ ଅପମାନିତ କଲେ, ଶୁଣିବ ଶ୍ରୀକାନ୍ତ ? Mr./Mrs. Burmaଙ୍କୁ ନିମନ୍ତ୍ରଣ

କରିଯାଇଥାଏ ଗୋଟାଏ Partyକୁ, ଠିକ୍ ସେ ଦିନ ସନ୍ଧ୍ୟାରେ ମୁଁ ଯେତେବେଳେ ଯିବାକୁ କହିଲି—ସେ ଯିବ କ'ଣ ? ଓଲଟି ମତେ ବିଷ୍ଣୁ ଶର୍ମା ଉପାଖ୍ୟାନ ଶୁଣାଇଲା ।

ଶ୍ରୀକାନ୍ତ ॥ ମୁସ୍କିଲ କଥା ସେ ଏମିତ ନାଚ୍ଛକ ଋଷିକନ୍ୟାଙ୍କ ଭଳି ଆପଣଙ୍କୁ ଧର୍ମୋପଦେଶ ଶୁଣେଇଲେ, ଆଜି ଆପଣ ମାରବରେ ଉପଦେଶାମୃତ ପିଇ ଦେଇଗଲେ ।

ତପନ ॥ ସେଗୁଡ଼ାକ କହିବା ପାଇଁ ମତେ ଲଜ୍ଜା ଆସେ । Partyରେ ଯେମିତ ଭବେ ମୁଁ ଅସମ୍ମାନିତ ହେଲି·····Strong କିଛି ନ ପିଅ—ଟିକିଏ Beer ନେଇ table ଉପରେ Company ନେଲେ କଣ ତମର କ୍ଷତି ହୋଇଯାଉଛି ? ଅନ୍ୟମାନଙ୍କର ତ ପୁଣି ମିସେସ୍ ଅଛନ୍ତି । ଓଃ ସେଠି ସିଏ ଯୋଉ Scene create କଲା, ଇଚ୍ଛା ହେଲା ସଙ୍ଗେ ସଙ୍ଗେ ତାକୁ divorce କରିବି ।

ଶ୍ରୀକାନ୍ତ ॥ (ଆଖି କ୍ରମଶଃ ମୁଦ ହୋଇ ଆସୁଥିଲା) କ'ଣ କହିବ Sir, ହ really Sir ସାଙ୍ଗେ ସାଙ୍ଗେ divorce କରିବା କଥା ।

ତପନ ॥ (ଅଭିନୟ କରି) ହେଲେ କହିଲା ମୁଁ ପଛେ ତୁମ ପିଆଲା ପୂର୍ଣ୍ଣ କରି ନେବି, ତୁମେ ସେ ଡାଆଣୀଟା ପାଖକୁ ଯାଅନା । ମୁଁ ପଛେ ତୁମର······ମୁଁ କଣ କହୁଥିଲି ।

ଶ୍ରୀକାନ୍ତ ॥ ଆପଣଙ୍କର ଗୋଟେ dramatic talent ଅଛି । ଆପଣଙ୍କ ପରି talented ଲୋକ ଭାଗ୍ୟରେ (ନିଶାରେ ଟୁଳୁଟୁଳୁ ହୋଇ)...ନାରୀ ଚରିତ ବୁଝିବା ସବୁ କଠିନ ।

ତପନ ॥ କେବଳ ତା'ରି ପାଇଁ ମନରେ ଝଡ଼ ଉଠିଛି ଶ୍ରୀକାନ୍ତ ।

ଶ୍ରୀକାନ୍ତ ॥ ତା' ଛଡ଼ା Fatherଙ୍କ behaviour କ'ଣ ବାଧୁ ନଥିବ ? ସେ ଦିନ ପକେଟରୁ ପଇସା ଚୋରେଇ Pistol କିଣି ଆଣିଲେ ।

॥ ସପ୍ତମ ଦୃଶ୍ୟ ॥

ତପନ ॥ ତାଙ୍କ ପାଇଁ ମୁଁ ଖୁବ୍ ଦୁଃଖିତ......Ashamed......ବାଧ୍ୟ ହୋଇ ତାଙ୍କୁ ଗୋଟେ ଘରେ Luck up କରି ଦେଇଛି ।

ଶ୍ରୀକାନ୍ତ ॥ ମୋର ଭୟ ହେଉଛି ଶିଖା ଯଦି ଏସବୁ ଫମ୍ପା ଆଦର୍ଶରେ ଅନୁପ୍ରାଣିତ ହୋଇଯାଏ ।

ତପନ । No ତପନ ବର୍ମାର ଭଉଣୀ ହେଇ ସେ ଉକ୍ତାକୁ ଆଦର୍ଶ ବୋଲି ଗ୍ରହଣ କରିବନି । ହଁ ତମେ ଠିକ୍ ସମୟରେ ମନେ ପକେଇ ଦେଇଚ ଶ୍ରୀକାନ୍ତ । ଶିଖାର Marriage ମୋ'. ପାଇଁ ଗୋଟେ ସମସ୍ୟା ହେଇଗଲାଣି, ତମେ ଯଦି ସତରେ......

ଶ୍ରୀକାନ୍ତ ॥ ଆପଣ ସେଥିପାଇଁ ଆଦୌ ବ୍ୟସ୍ତ ହେବେନି Sir । ମୁଁ ସେ ଦାୟିତ୍ୱ ନେଲି ।

ତପନ ॥ O. K. ତାହାହେଲେ ମୁଁ ନିଶ୍ଚିନ୍ତ ରହୁଛି (ହାତ ମିଳାଇ) (ହଠାତ୍ ଶିଖା ପଶି ଆସିଛି)

ଶିଖା ॥ ତମେ ମନା କରିବା ସତ୍ତ୍ୱେ ମୁଁ ଆସିବା ପାଇଁ ବାଧ୍ୟ ହେଲି ଭାଇ ।

ତପନ ॥ (ଆଖି ମଳି) ଶିଖା ! ତୁ ଏଇ ରୁମ୍‌ରେ...ଏତେବେଳେ...

ଶିଖା ॥ କାହିଁକି ? ତମର ବୋଧହୁଏ ଅସୁବିଧା ହେଲା ?

ତପନ ॥ କ'ଣ ହେଇଛି ?

ଶିଖା ॥ ବଡ଼ ଭାଇଙ୍କୁ ଏମିତି ଅବସ୍ଥାରେ ଦେଖିବି ବୋଲି ମୋର ଅନ୍ତତଃ ଆଶା ନ ଥିଲା । ଛି, ଭାଇ, ତମେ ଏତେ ତଳକୁ ଖସି ଯାଇପାରିଲ ?

ତପନ ॥ ନା......ମାନେ......ଶିଖା ! ତୁ ହଠାତ୍......କ'ଣ ହେଇଚି ?

ଶିଖା ॥ ଆସିବା ପାଇଁ ବାଧ୍ୟ ହେଲି । ଭାଉଜଙ୍କ ଅବସ୍ଥା Serious, ଠେଲେଇ ଘର ଭିତରକୁ ମୁଁ ଦୌଡ଼ି ଯାଇ ନ ଥିଲେ, ସେ Gas ଚୁଲି ଉପରେ ହଠାତ୍ ସଂଜ୍ଞାହୀନ ହୋଇ ପଡ଼ିଲେ

॥ ଅଠସ୍ତମ୍ଭ ॥

ଯାଇ । ତମେ ଶୀଘ୍ର ଡାକ୍ତର ଡାକି ଆଣି ଯାଇ । ଘରେ ହରିଆ ଛଡ଼ା ଆଉ କେହି ନାହାନ୍ତି ।

ଶ୍ରୀକାନ୍ତ ॥ ମାନେ ହଠାତ୍ ଏମିତି...ଆଃ...ଛିଃ...ଛିଃ...

ଶିଖା ॥ ସେଦିନ ସେ ବାବାଙ୍କ ପ୍ରସାଦ ଫୋପାଡି ଦେବା ପରଠୁ ଆଦୌ ଖାଉ ନାହାନ୍ତି ।

ତପନ ॥ ଓଃ Down you ଯାଉନ ।

ଶିଖା ॥ ଯାଇ !

ତପନ ॥ Let her go to hell. ତୋର ସେଥିରେ ମୁଣ୍ଡ ଖେଳାଇବା ଦରକାର ନାହିଁ । ମୋ'ର ବର୍ତ୍ତମାନ ଡ଼ାକ୍ତର ଡ଼ାକିବା ପାଇଁ ସମୟ ନାହିଁ । ଆସ ଶ୍ରୀକାନ୍ତ, ଆମେ ଟିକେ Advocate ମହାପାତ୍ରଙ୍କ ପାଖକୁ ଯାଇ ଏ ବିଷୟରେ ଟିକିଏ Consult କରିବା । ଅନ୍ତତଃ ଯଦି ସେମାନେ Caseଟା କରନ୍ତି ଆମକୁ ତ ଆଗରୁ prepared ହେବାକୁ ପଡ଼ିବ ।

ଶ୍ରୀକାନ୍ତ ॥ ଆପଣ ଏକଲା ଯାଇ Consult କରିବା ଉଚିତ Sir । ଆଡଭୋକେଟ୍ ମହାପାତ୍ର ଜାଣିବେ ଯେ, ମୁଁ ଆପଣଙ୍କର Private affairs ସହିତ......

ତପନ ॥ ଠିକ୍ ଅଛି । ତମେ ତା ହେଲେ Directly ଶିଖା ସାଙ୍ଗରେ କଥାବାର୍ତ୍ତା କର, ସେ ସମ୍ପର୍କରେ । ମୁଁ ଗଲି । (ଯାଉଥିଲେ)

ଶିଖା ॥ ହଇ ! ଅନ୍ତତଃ ତମେ ଥରେ ତାଙ୍କର ଅବସ୍ଥା ଦେଖି ଆସିବ ଚାଲ । ଯାଇ ! (ତପନ କିଛି ନ ଶୁଣି ଚାଲିଗଲେ, ଶିଖା ଭାଙ୍ଗି ପଡ଼ନ୍ତି) ଭାଇ !!

ଶ୍ରୀକାନ୍ତ ॥ ଯିଏ ଯାଉଛି, ତାକୁ ଯିବାକୁ ଦିଅ ଶିଖା, ବରଂ ବର୍ତ୍ତମାନଟା ସରସ ଆଉ ମଧୁର କରିବାକୁ ଚେଷ୍ଟା କର ।

ଶିଖା ॥ କ'ଣ ଆକଣ୍ଠ ମଦ ପିଇଲେ ମଧୁରତା ବାହାରେ ?

॥ ଅଣାଅଶୀ ॥

ଶ୍ରୀକାନ୍ତ ॥ ଆକଣ୍ଠ ପିଇ ପିବା ଭିତରେ ଯୋଉ ଆନନ୍ଦ, ତା ତୁମେ ବିନା ଅନୁଭୂତିରେ ବୁଝିପାରିବ ନାହିଁ, ଶିଖା । I have a taste. ଚାହିଁ ଦେଖ, ମନଟା କେମିତି ରଙ୍ଗୀନ ସ୍ୱପ୍ନରେ ଭରିଯାଉଛି ।

ଶିଖା ॥ ବେଶ୍ ସ୍ୱପ୍ନ ଦେଖୁଥିଲ ତା ହେଲେ ?

ଶ୍ରୀକାନ୍ତ ॥ ସେ ସ୍ୱପ୍ନ କିନ୍ତୁ ଆଜି ସତ୍ୟରେ ପରିଣତ ହେବାକୁ ଯାଉଛି । ତମ ଭାଇ ବର୍ତ୍ତମାନ ସମ୍ମତି ଦେଇ ଗଲେ, ତମର ଆଉ ମୋର ଶୁଭ ବିବାହଟା ଖୁବ୍ ଶୀଘ୍ର ଶେଷ ହେବାକୁ ଯାଉଛି ।

ଶିଖା ॥ ସେ ବିବାହ ? ତମ ସାଙ୍ଗରେ...

ଶ୍ରୀକାନ୍ତ ॥ Yes, ମୋ ସାଙ୍ଗରେ । କାହିଁକି ? ମୁଁ କଣ ଅପାତ୍ର । ଆସ......Please ଶିଖା ଆମେ ବିବାହର ମୁହୂର୍ତ୍ତଟା ଆରମ୍ଭ କରିଦେବା । ଆସ..... Let us enjoy with a peg of wine. (ଶ୍ରୀକାନ୍ତ ଶିଖାର ହାତଟିକୁ ଧରି ପକାଇଛନ୍ତି, ଶିଖା ଭୀଷଣ ରାଗି ଯାଇଛି, ସେ ଥରେ ତା ହାତକୁ ଓ ଥରେ ଶ୍ରୀକାନ୍ତର ମୁହଁକୁ ଚାହିଁଛି)

ଶିଖା ॥ Yes hell ! ଝିଅଙ୍କ ସାଙ୍ଗରେ କେମିତି କଥାଭାଷା କରିବାକୁ ହୁଏ, ସେ କଥା ଶିଖେଇବାକୁ ପଡ଼ିବ ? ତମେ ଅଭଦ୍ରାମିର ସୀମା ଲଙ୍ଘନ କରୁଛ ।

ଶ୍ରୀକାନ୍ତ ॥ ସୀମାରେଖା ? ତମେ ଏତେ ଶିକ୍ଷିତା ହେଲ ପରେ ପ୍ରେମ ପାଇଁ ଗୋଟେ ସୀମାରେଖା କ'ଣ କହୁଛ ଯେ ? ତମେ ସୀତା ନୁହେଁ ଆଉ ମୁଁ ରାବଣ ନୁହେଁ......(ହସିଛି) Come on my darling ! ଏ ସନ୍ଧ୍ୟାରେ ସାକି ହୋଇ ମୋର ପିଆଲା ପୂର୍ଣ୍ଣ କରିଦିଅ ।

ଶିଖା ॥ What ? ଭାଇ କଣ ତମକୁ ଏଇଆ କହିବାକୁ କହି ଦେଇ ଗଲେ ?

ଶ୍ରୀକାନ୍ତ ॥ ଭାଇ କ'ଣ ଜାଣନ୍ତି ନାହିଁ ତମର ଓ ମୋର ସମ୍ପର୍କ କ'ଣ ? ଦେଖ ଶିଖା, my lady, ତମର ବିବାହ ବୟସ ହେଲାଣି ଏବଂ status ଖୋଜି ଖୋଜି ତମ ଭାଇ ତମକୁ ଠିକ୍ ଜାଗାରେ ବାହା କରେଇ ଦେଇପାରୁ ନାହାନ୍ତି । Status ପାଇଁ ଯୌତୁକ ଲୋଡ଼ା । ଆଜି ତମ ଭାଇଙ୍କର ସେତିକି ଯୌତୁକ ଦେବା ପାଇଁ ପଇସା ନାହିଁ । Here is a volunteer ! ଷାଠିଏ ହଜାର ଟଙ୍କା ହାତରୁ ଦେଇ ଯିଏ ତୁମକୁ ବାହି ବାହି ଅପେକ୍ଷା କରିଛି । ଆସ...ଆସ... (ଶ୍ରୀକାନ୍ତ ଚେଷ୍ଟା କରୁଛି ଶିଖାକୁ ଟାଣି ଆଣିବା ପାଇଁ ଓ ଶିଖା ଚାପୁଡ଼ାଏ ମାରୁଛି ଶ୍ରୀକାନ୍ତକୁ)

ଶିଖା ॥ ତମର ପିଆଲା ପୂର୍ଣ୍ଣ କରିଦେବା ପୂର୍ବରୁ ଶିଖାର ଅନ୍ୟ ରୂପଟା ଦେଖି ନିଅ ଶ୍ରୀକାନ୍ତ, ସେ କେବଳ ପ୍ରେମ କରି ଜାଣେନି—ତମ ଭଳି Scoundrelକୁ ଶାସନ ମଧ୍ୟ କରିପାରେ । (ଦ୍ରୁତଗତିରେ ଚାଲିଯାଇଛି । ଶ୍ରୀକାନ୍ତଙ୍କ ନିଶା ଛୁଟି ଯାଇଛି । ସେ ହସିଛନ୍ତି, ପୈଶାଚିକ ହସ ।)

ଶ୍ରୀକାନ୍ତ ॥ ସେଦିନ ଖୁବ୍ ପାଖେଇ ଆସୁଛି ଶିଖା । ଷାଠିଏ ହଜାର ଟଙ୍କା ଓ ଗୋଟାଏ ରୂପସୀ ନାରୀର ତାଜା ମାଂସ...... ଚମତ୍କାର ବିନିମୟ । (ବାହାରି ଯାଇଛି । ମଞ୍ଚ ଅନ୍ଧକାର । ପୁଣି ଆଲୋକ ଜଳିଲା ବେଳକୁ ସକାଳ । ବାହାରୁ ଜଣେ ଡାକ୍ତରଙ୍କୁ ନେଇ ଆସିଛନ୍ତି ରଞ୍ଜନ (ଆଡ଼ଭୋକେଟ୍ ଏବଂ ଶିଖାର ଭାଇ) ]

ରଞ୍ଜନ ॥ ବସନ୍ତୁ ଡ଼କ୍ଟର । ମୁଁ Patientକୁ ଆଣୁଛି ।

ଡ଼କ୍ଟର ॥ ଚାଲନ୍ତୁ ନାହାନ୍ତି ଭିତରୁ ଦେଖି ଆସିବା......

ରଞ୍ଜନ ॥ ସେମିତି ବେଡ୍‌ରିଡ଼ନ୍ ଅବସ୍ଥା ନୁହେଁ । Just a minute.
(ଭିତରକୁ ଗଲେ ଓ ରକ୍ତାକୁ ଧରି ଆସିଲେ)

ରକ୍ତା ॥ (ବସୁ ବସୁ) ତମେ ଆଉ କାହିଁକି ଡ଼ାକ୍ତର ଡ଼ାକି ଆଣିଲ ଘରକୁ ! ମୁଁ ଆଉ ଭଲ ହୋଇ ପାରିବିନି ।

ରଞ୍ଜନ ॥ ତୁ ଚୁପ୍ ରହ୍, ବସିଲୁ । ଜାଣନ୍ତି ଡ଼କ୍ଟର ? ସ୍ତ୍ରୀ'ର ମାନସିକ ଅବସ୍ଥା ଏତେ ଖରାପ ଯେ, ଜାଣି ଜାଣି Healthକୁ ନେଗ୍‌ଲେକ୍ଟ୍ କରୁଚି । ଆଦୌ ଔଷଧ ଖାଉନି ।

ଡ଼କ୍ଟର ॥ (ପରୀକ୍ଷା କରୁ କରୁ) ଆପଣ ଔଷଧ ନ ଖାଇଲେ ଭଲ ହେବେ କେମିତି ?

ରକ୍ତା ॥ ମୁଁ ଭଲ ହେବାକୁ ଚାହୁଁନି ଡ଼କ୍ଟର । ବରଂ ଟିକିଏ ବିଷ ଦେଇ ଦିଅନ୍ତୁ । ସବୁଦିନ ପାଇଁ ମାନସିକ ଅଶାନ୍ତି ବନ୍ଦ ହୋଇଯିବ ।

ଡ଼କ୍ଟର ॥ ବୁଝିଲେ ରଞ୍ଜନ ବାବୁ ! ସେଇ ପୁରୁଣା ବେମାରି, ଏହା ସାଙ୍ଗକୁ ଯଦି ଏମିତି ଅଖିଆ ଅପିଆ ରହନ୍ତି ତା' ହେଲେ ଅବସ୍ଥା ଆହୁରି ସାଂଘାତିକ ହେବ ।

ରଞ୍ଜନ ॥ କିଛି improvement ହୋଇନି ?

ଡ଼କ୍ଟର ॥ (ପ୍ରେସ୍‌କ୍ରିପସନ୍ ଲେଖି ସାରି) କଣ ଆଉ improvement ହେବ । ରୋଗୀକୁ ଯଥାଶୀଘ୍ର ଅନ୍ୟ ସ୍ଥାନକୁ ନେଇଯିବା ଉଚିତ । ଏଇଠି ରହିଲେ ମାନସିକ ଦୁଃଶ୍ଚିନ୍ତା ଭିତରେ...
(ଡାକ୍ତର ଉଠିଲେ, ରଞ୍ଜନ ତାଙ୍କୁ ଛାଡ଼ି ଦେବା ପାଇଁ ଯାଇଛି । ଭିତରୁ ଆସିଛି ମୁକ୍ତିକାନ୍ତ ।)

ମୁକ୍ତିକାନ୍ତ ॥ ଆପଣଙ୍କ ଦେହ କେମିତି ଅଛି ?

ରକ୍ତା ॥ ଛାଡ଼ନ୍ତୁ ଦେହ ଭଲ ହୋଇ ଆଉ କ'ଣ ହେବ ?

॥ ବସ୍ତ୍ରାଅଣୀ ॥

ମୁକ୍ତକାନ୍ତ ॥ ଏତେ ପାଠ ପଢ଼ି, ଏ ସବୁ ଥାଇ ମଣିଷ ଯେ, ଦୁଃଖ ପାଇପାରେ ମୁଁ ଜାଣିନଥିଲି । ମୁଁ ଦେଖୁଛି ଆମ Hospitalର ପାଗଳମାନେ ବେଶ୍ ଖୁସିରେ ଅଛନ୍ତି । କେଜାଣି, ମିଛେ ମିଛେ ଜୀବନରେ ଏତେ ଦୁଃଖ କାହିଁକି ଆସେ ?

ରଞ୍ଜନ ॥ (ଫେରି ଆସି) ନିଜ ପ୍ରତି ଏତେ ଅତ୍ୟାଚାର କାହିଁକି କରୁଛୁ ତୁ ଶିକ୍ତା !

ଶିକ୍ତା ॥ ତମେ କାହିଁକି ଏତେ ବ୍ୟସ୍ତ ହେଉଛ ଭାଇ ? ମୋର କିଛି ହୋଇ ନାହିଁ ।

ରଞ୍ଜନ ॥ ତୋର କ'ଣ ହୋଇଛି କି ନାହିଁ—ତୁ ବୁଝି ପାରୁନୁ ଶିକ୍ତା । ଗଜେନ୍ଦ୍ର ବାବୁ ଯେମିତି ଖବର ଦେଲେ ମୁଁ ଦୌଡ଼ି ଆସିଲି । ଦେହ ଯାହା ହେଲାଣି ତୋ'ର······ନା କ'ଣ ମୁକ୍ତକାନ୍ତ ବାବୁ । ଆପଣ ତ ଏ ଘରର ଲୋକ ଭଳି । ଆପଣ କହୁନାହାନ୍ତି, କଣ ମନେ ହେଉଛି ଆପଣଙ୍କର ?

ମୁକ୍ତକାନ୍ତ ॥ କଣ ବା ମନେ ହେବ ମୋର ! ମୁଁ ତ କେବେ ଏ ସଭ୍ୟ ଜଗତରେ ଚଳିନି । ତେବେ ଏଇଠିକି ଆସି ପ୍ରଥମ ଥର ଅନୁଭବ କରୁଛି—ସବୁଥାଇ ମଣିଷ ଶୂନ୍ୟ ହୋଇପଡ଼େ ।

ରଞ୍ଜନ ॥ ଏତେ ଅଳିଅଳରେ ଶିକ୍ତା ବଢ଼ିଥିଲା ଯେ—ଶୁଣିଲେ ଆପଣ ହସିବେ । ଏଇଠି ତା'ର ଅବସ୍ଥା ଯାହା ହେଲାଣି···

ମୁକ୍ତକାନ୍ତ ॥ ଜାଣେ ! ଡ଼ାକ୍ତର ବସୁ କହୁଥିଲେ ଅନ୍ୟକୁ ଭଲ ପାଇବା ଏତେ ସହଜ କଥା ନୁହେଁ ।

ଶିକ୍ତା ॥ ସେ ଯାହା ହେଉ ବା, ଏ ଘର ମୋ' ପାଇଁ ସ୍ୱର୍ଗ ଭାଇ ! ଏଇଠି ମୋ' ସଧବା ଜୀବନ ଆରମ୍ଭ ଓ ଏଇଠି ହେବ ତାର ସମାପ୍ତି । (ମୁକ୍ତକାନ୍ତ ବଗିଚା ପଟେ ଚାଲିଯାଇଛି ।)

॥ ତେପୂଆଶୀ ॥

ରଞ୍ଜନ ॥ ଘରକୁ ଯାଇ ମୁଁ ବାପାଙ୍କୁ କ କୈଫିୟତ ଦେବ ଶକ୍ତା ? କେଉଁ ମୁହଁରେ ମୁଁ ବୁଝାଇବି ଶକ୍ତା ସୁଖରେ ଅଛି । ତୁ ବରଂ ମୋ ସାଙ୍ଗରେ ଚାଲିଆ । ଡ଼ାକ୍ତର ବି ସେହି କଥା କହୁଛନ୍ତି । ତୋର Change of place ନହାତ ଦରକାର ।

ଶକ୍ତା ॥ ଭାଇ !

ରଞ୍ଜନ ॥ ହଁ ଶକ୍ତା ମତେ ଲୁଚାଇ କିଛି ଲାଭ ନାହିଁ । ମୁଁ ସବୁ କିଛି ଭିତରେ ସବୁ ଦେଖିଛି ଓ ସବୁ ଶୁଣିଛି । ଦରକାର ପଡ଼ିବ—ତୁ ତପନକୁ divorce କର ।

ଶକ୍ତା ॥ ତମେ ଯାଅ ଭାଇ ! ମତେ ଉଚ୍ଚଶିକ୍ଷା ଦେଇଥିଲ କ'ଣ ଏଇଥି ପାଇଁ ?

ରଞ୍ଜନ ॥ ସେଇଟା ଗୋଟେ ଯୁକ୍ତି । ମୋର କେବଳ ଗୋଟାଏ ଅନୁରୋଧ ତୁ ନିୟମିତ ଔଷଧ ଖା ଏବଂ ଦେହକୁ ଜଗିରଖି ଚାଲ ।

ଶକ୍ତା ॥ ଏଇଠି ଏମିତି ସଢ଼ି ସଢ଼ି ମଲେ ବି ମୋ' ମନରେ ଟିକିଏ ଦୁଃଖ ହେବ ନାହିଁ, ଭାଇ ! ତମେ ଯାଅ ।

(ପ୍ରବେଶ କଲେ ତପନ—ଥରେ ଶକ୍ତା ଥରେ ରଞ୍ଜନକୁ ଦେଖି)

ତପନ ॥ କଣ Advocate ସାହେବ ! କନିଷ୍ଠାଙ୍କର ସ୍ୱାସ୍ଥ୍ୟ ତଦାରଖ ଚାଲିଛି ? କେମିତି ଦେଖିଲ ?

ରଞ୍ଜନ ॥ ସେ ଖବରଟା ମୁଁ ତୁମକୁ ପଚାରିଥିଲେ—ସୁନ୍ଦର ଶୁଭିଥାନ୍ତା । କିନ୍ତୁ......

ତପନ ॥ ବଡ଼ ଅଭିମାନିଆ ସ୍ୱରରେ କଥାଗୁଡ଼ା କହୁଛ ଯେ...... ମୁଁ ଶକ୍ତାର ଯତ୍ନ ନେଉନ ବୋଲି ରାଗ ହେଉଛି ବୋଧ-ହୁଏ ।

ରଞ୍ଜନ ॥ ନା, ମିଛେ ମିଛେ ରଞ୍ଜନ ମହାନ୍ତି ରାଗେନା । ଆଉ ରାଗିଲେ ତା'ର ପରିଣାମଟା କ'ଣ ହୁଏ—ଜାଣିବାର ଅବକାଶ ପାଇନାହଁ ତୁମେ ।

ତପନ ॥ ନା, ନା, ରାଗ ନାହିଁ । ତେବେ ମୁଁ ଭାବିଲି—ଖୋଦ୍ ଭାଇ ସାହାବ ଯେତେବେଳେ ଅଛନ୍ତି, ମୋର Serviceଟା ଆଉ ଦରକାର ହେବ ନାହିଁ ।

ରଞ୍ଜନ ॥ ନା, ତମର ଆଉ ସାହାଯ୍ୟ ଦରକାର ପଡ଼ିବ ନାହିଁ । ମୁଁ ଆଜ ରିକ୍ତାକୁ ନେଇ ସମ୍ବଲପୁର ଚାଲିଯାଉଛି ।

ତପନ ॥ ଖୁସିରେ ନେଇପାର । ମୋର ସେଥିରେ ଆପତ୍ତି ନାହିଁ । ବରଂ ସବୁଦିନ ପାଇଁ ନେଇ ପାରିଲେ ଖୁସି ହୋଇ ପାରନ୍ତି ।

ରଞ୍ଜନ ॥ ତପନ !!!

ରିକ୍ତା ॥ ଭାଇ ।

ରଞ୍ଜନ ॥ କିନ୍ତୁ ତୁମେ ରିକ୍ତାକୁ କାହିଁକି ଅପମାନିତ କରିବ ?

ତପନ ॥ ସେ ପ୍ରଶ୍ନଟା ମତେ ନ ପଚାରି ତମ ଭଉଣୀ ରାଣୀକୁ ପଚାରିପାର ?

ରଞ୍ଜନ ॥ ବେଶ୍ ମୁଁ ଆଜ ରିକ୍ତାକୁ ସବୁଦିନ ପାଇଁ ନେଇ ଯାଉଛି । କିନ୍ତୁ ତମେ ତା'ର ପରିଣାମ ପାଇଁ ପ୍ରସ୍ତୁତ ହୋଇ ରହିବ ତପନ ।

ତପନ ॥ All right ତୁମେ ଶୀଘ୍ର ତା କବଳରୁ ମତେ ରକ୍ଷା ଦିଅ । ମୁଁ ବି ତାକୁ ନେଇ ଜୀବନ ଚଳେଇ ପାରିବିନି । ଖାଲି ଧର୍ମ, ଓଷା, ବ୍ରତ କରି ଓଢ଼ଣା ତଳେ ରହି ଲକ୍ଷେ କାମନା ଆଉ ଅନ୍ୟକୁ ପାଇବାର ପିପାସା । ସିମିତି Hypocritic prostitution ଅପେକ୍ଷା ମୁଁ ମୋର ଏଇ ମୁକ୍ତ ଜୀବନଟା ପସନ୍ଦ କରେ ।

ରଞ୍ଜନ ॥ You drunkered ! ମୋ' ସାମନାରେ ଶକ୍ତାକୁ କହିବା ପାଇଁ ତୋର ସାହସ ହେଲାଣି ? (ଉତ୍‌କ୍ଷିପ୍ତ ଭାବେ ତପନର Tie ଛଡ଼ାଇ ନେଲେ)

ଶକ୍ତା ॥ (ରଞ୍ଜନକୁ ଛଡ଼ାଇ ନେଇ) ଭାଇ ! ତମେ ଏ କ'ଣ କରୁଛ ଭାଇ ! ସେ ମଦ୍ୟପ ହୁଅନ୍ତୁ ବା ଅନ୍ୟ କିଛି ହୁଅନ୍ତୁ—ସେ ମୋର ସ୍ୱାମୀ—ଇହପର କାଳର ଦେବତା ।

ରଞ୍ଜନ ॥ ମୁଁ କିନ୍ତୁ ମୋ' ଆଖି ଆଗରେ ତୋ ଉପରେ ଏମିତି କୁତ୍ସିତ ମନ୍ତବ୍ୟ ଶୁଣି ପାରେନା ଶକ୍ତା—ସଭ୍ୟ ମଣିଷ ବି ଏମିତି ବେଳେ ବେଳେ ହିଂସ୍ର ହୋଇଯାଏ—ତପନ ଭଳି କେତେଟା ପଶୁଙ୍କ ଲାଗି ।

ତପନ ॥ Behave like a gentleman ରଞ୍ଜନ—ତମର ମନେ ରଖିବା ଉଚିତ୍ ଯେ, ଏଇଟା Engineer ତପନ ବର୍ମାଙ୍କ ଘର ।

ରଞ୍ଜନ ॥ ମନେ ରହିଲା ଏବଂ ଭବିଷ୍ୟତରେ ରହିବ ମଧ୍ୟ । ଆ, ଶକ୍ତା ! (ଶକ୍ତାକୁ ଏକ ରକମ ଟାଣି ଟାଣି ନେଇ ଯାଇଛି)

ତପନ । Good bye ଶକ୍ତା—ଖୁସିରେ ଯାଇ ତମ Advocate ଭାଇଙ୍କ ହାତରେ ଗୁଡ଼ପତ୍ରଟିଏ ଲେଖାଇ ଦିଅ—

ମୁକ୍ତିକାନ୍ତ । ଆପଣ ତାଙ୍କ ସହିତ ଏମିତି କାମୁଡ଼ା କାମୁଡ଼ି ହେଲେ ଯେ......

ତପନ ॥ (ରାଗି) କଣ କହିଲ ?

ମୁକ୍ତିକାନ୍ତ ॥ ମୁଁ ତ ଡରି ଯାଇଥିଲି । ମାନେ, ଆମ ପାଗଳା ଗାରଦରେ ଲୋକେ ଏମିତି ମାରପିଟ୍ ହୁଅନ୍ତି । ଜଙ୍ଗଲରେ ଦେଖୁଛି ପଶୁପକ୍ଷୀମାନେ କାମୁଡ଼ା କାମୁଡ଼ି ହୁଅନ୍ତି । କିନ୍ତୁ...... ଏଇଠି......ଏମିତି ସଭ୍ୟ ସମାଜରେ ଆପଣମାନେ......

ତପନ ॥ ମୁକ୍ତିକାନ୍ତ !

ମୁକ୍ତିକାନ୍ତ ॥ ଆପଣ ନିଜ ସ୍ତ୍ରୀଙ୍କୁ ଏମିତି ଅବହେଳା କରୁଛନ୍ତି କାହିଁକି ?

ତପନ ॥ ମୋତେ ତମେ ଉପଦେଶ ଦଉଚ ?

ମୁକ୍ତିକାନ୍ତ ॥ ଡ଼ାକ୍ତର ବସୁ କହୁଥିଲେ ମଣିଷ ମଣିଷକୁ ଯଦି ପ୍ରେମ କରେ ତା ହେଲେ ପୃଥିବୀ ସ୍ୱର୍ଗ ହୋଇ ପାରିବ—ସମସ୍ତେ ଦେବତା ହୋଇ ପାରିବେ —ଠିକ୍‌ଏ ପ୍ରେମ ଆଉ ସ୍ନେହର ଅଭାବରେ ମଣିଷ ପଶୁ ହୋଇଯାଏ—ତେଣୁ···

ତପନ ॥ Get out you idiot. ଯା' ଏଠୁ ।

(ଶ୍ରୀକାନ୍ତ ଆସିଛି)

ଶ୍ରୀକାନ୍ତ ॥ ସାର୍ ନମସ୍କାର, ତମେ ଡ଼କେଇ ପଠେଇଥିଲେ ?

ତପନ ॥ ହଁ ଶ୍ରୀକାନ୍ତ, ବସ (ମୁଣ୍ଡ ଚିପି ଧରିଥାନ୍ତି)

ଶ୍ରୀକାନ୍ତ ॥ କଣ ହେଇଛି ସାର୍, କିଛି ଖରାପ ସମ୍ବାଦ ।

ତପନ ॥ ଶ୍ରୀରାମପୁର ବ୍ରିଜ୍ କାମ ନେଇ ମୋ ନାଁରେ Vigilance report.· ତିନି ତିନିଟା ଖବରକାଗଜରେ ସମାଲୋଚନା ବାହାରିଲାଣି । ଦେଖିଛ ।

ଶ୍ରୀକାନ୍ତ ॥ I am very much sorry. Sir, କଣ କରିବି ? ଏମିତି ହବ ବୋଲି ମୁଁ ଆଦୌ ବିଶ୍ୱାସ କରିନଥିଲି ।

ତପନ ॥ ହଠାତ୍ ବ୍ରିଜଟା ଭୁଷୁଡ଼ି ପଡ଼ିଲା କେମିତି ? କ'ଣ କରୁଥିଲ ତମେ ? ଓଃ କି ମୁସ୍କିଲ୍ ।

ଶ୍ରୀକାନ୍ତ ॥ ସବୁ ସେଇ ଗଜେନ୍ଦ୍ର ଗୁମାସ୍ତା ଉପରେ ଛାଡ଼ି ଦେଇ ଏମିତି ହେଲା ସାର୍ !

ତପନ ॥ (ବିରକ୍ତ ହୋଇ) Billଟା ଆଗୁଆ Pass କରି ଦେଇ ସବୁ ଏମିତି ହେଲା ।

ଶ୍ରୀକାନ୍ତ ॥ ବିଶ୍ୱାସ କରନ୍ତୁ Sir. ଲକ୍ଷ ଲକ୍ଷ ଟଙ୍କାର ଲୁହାଛଡ଼, ସିମେଣ୍ଟ କୁଆଡ଼େ ଯାଉଛି ମୁଁ ଜାଣିପାରୁନି । ଦୁଇ ଦିନ

ତଳେ Stock verification କଲାବେଳକୁ......ଏଇ ଗୁରିମାସ ଭିତରେ ପ୍ରାୟ ଲକ୍ଷେ ଟଙ୍କା ବରବାଦ ହୋଇ ସାରିଲଣି ।

ତପନ ॥ ସେଇଟା ତମ ବ୍ୟକ୍ତିଗତ ତଦାରଖ ଅଭାବରୁ । ଏଣେ ମୋ' ଭ୍ରୂକଷ୍ଟା ଯିବା ଉପରେ ଯେ । ତମେ ତ ଭଲ ଭାବେ ଜାଣ ଶ୍ରୀକାନ୍ତ anti corruption schemeରେ ଇଞ୍ଜିନିୟର ଗୁଡାକ କେମିତି ଅସହାୟ ମନେ କରୁଛନ୍ତି......ମାନେ ମୁଁ ଭାବି ପାରୁନି ।

ଶ୍ରୀକାନ୍ତ ॥ ବାପାଙ୍କ ଅମଳର ଗୁମାସ୍ତା ବୋଲି ତା' ହାତରେ ସବୁ ଛାଡ଼ି ଦେଇ ମୁଁ ଟିକିଏ ଫୁର୍ତ୍ତି କରୁଥିଲି । କିଏ ଜାଣିଥିଲା Sir......

ତପନ ॥ ଗଙ୍ଗାଧର୍ ଗୁମାସ୍ତା ବିଶ୍ୱାସଘାତକ ତ ନୁହେଁ ଶ୍ରୀକାନ୍ତ ?

ଶ୍ରୀକାନ୍ତ ॥ ଶୁଣିଲି ଯୁଆ ଭିତରେ ସେ ୧୦।୨୦ଟା ଘର ଉଆର କରି ସାରିଲଣି, ଗୋଟେ ଫ୍ଲେଟ କାଠର କଣ୍ଟ୍ରାକ୍ଟିଂ ମଧ୍ୟ କରୁଛି । ଓଃ, ଲୋକଟା ଏତେ ବଦ୍‌ମାସ ବୋଲି ମୁଁ ଜାଣିନଥିଲି Sir.

ତପନ ॥ ଆଶ୍ଚର୍ଯ୍ୟ । କିନ୍ତୁ ଯାହା କୁହ ଶ୍ରୀକାନ୍ତ ସବୁ ତମରି ଅପାରଗତାରୁ ।

ଶ୍ରୀକାନ୍ତ ॥ ଲୋକଟାକୁ ମୁଁ dismiss କରି ଦେଇଛି । ଏଇ ତ ମୁଁ ଆସିଲା ବେଳକୁ ଆପଣଙ୍କ ଗେଟ୍ ପାଖରେ ଠିଆ ହୋଇଥିଲା, ଡ଼କେଇବି ସାର୍ ।

ତପନ ॥ ଥାଉ ଗୁମାସ୍ତା ସଙ୍ଗେ ମୋର ସମ୍ପର୍କ କ'ଣ । ମୁଁ ପଚାରୁଛି ଏଇ ଯେଉଁ କ୍ରିଜଟା ଭୁଷୁଡ଼ି ପଡ଼ିଲା ତାକୁ ସମ୍ଭାଳିବ କିଏ ? ମାନେ ତମ କଥାରେ ବିଶ୍ୱାସ କରି......

ଶ୍ରୀକାନ୍ତ ॥ ଆପଣ ଭାବୁଛନ୍ତି ମୁଁ ଆପଣଙ୍କୁ ଧୋକା ଦେଇଛି ସାର୍ ?

ତପନ ॥ ନା, ମାନେ ମୁଁ କିଛି ଚିନ୍ତାକରି ପାରୁନି । ଶ୍ରୀକାନ୍ତ ଯାହା କହନ୍ତି ବିପଦ ଏକା ଏକା ଆସେନି……

ଶ୍ରୀକାନ୍ତ ॥ ମୁଁ ସେଇ ଗଜେନ୍ଦ୍ରକୁ ଡ଼ାକି ଆଣୁଛି Sir (ବାହାରକୁ ଯାଇ) ଗଜେନ୍ଦ୍ର, ଗଜେନ୍ଦ୍ର ।

ଗଜେନ୍ଦ୍ର ॥ (ବାହାରୁ) ଆଉ ଡାକିବା ଦରକାର ନାହିଁ ଆଜ୍ଞା ଯେତିକି ବୁଣିଥିଲି, ସେତିକି ଫଳ ପାଇଗଲି । ଖୁବ୍ ଫଳ ପାଇଗଲି । ଆପଣଙ୍କୁ ଦଣ୍ଡବତ । ଆପଣଙ୍କ ଚୌକିଟିକୁ ଦଣ୍ଡବତ । ଓଃ କି ଖୁବ୍ କାଣ୍ଡ ଚାଲିଛି ଇଏ ? (ତପନକୁ) ନମସ୍କାର ସାର୍ ।

ଶ୍ରୀକାନ୍ତ ॥ ଯାଅ ଚୌକିଟିରୁ ଯାଅ । ମୋର କିଛି ଆପତ୍ତି ନାହିଁ । ହେଲେ ଯିବା ପୂର୍ବରୁ Sirଙ୍କ ଆଗରେ ସଫାସଫା କହି ଯାଅ ।

ତପନ ॥ କ'ଣ ହେଉଛି ଗଜେନ୍ଦ୍ର ?

ଶ୍ରୀକାନ୍ତ ॥ ବେଶ୍ କୁହ, Sir ଙ୍କ ଆଗରେ ମୋ ପ୍ରଶ୍ନର ଜବାବ ଦିଅ ।

ଗଜେନ୍ଦ୍ର ॥ ଜବାବ ! କି ଜବାବ ଦେବି ଆଜ୍ଞା, ପଚାରନ୍ତୁ, ଖୁବ୍ ଭାବେ ପଚାରନ୍ତୁ, ଗୋଟି ଗୋଟି କରି ଯଦି ମୁଁ ଉତ୍ତର ନ ଦେଇଛି ମୋ ନାଁ ଗଜେନ୍ଦ୍ର ଭୂଷଣ ନୁହେଁ । କହୋ, ମୋତେ କଣ ସବୁ ପାଇଲିକି ? ପଣସ ଖାଇଲା ବେଳକୁ ସମସ୍ତେ ଖାଇବ, ଆଉ ଶେଷରେ ଅଠା ମୋ' ମୁଣ୍ଡରେ ବୋଳା ହେବାକୁ ଥିଲା ।

ଶ୍ରୀକାନ୍ତ ॥ ଶ୍ରୀରାମପୁର ବ୍ରିଜ୍ କାମରୁ ସବୁ Cement ତମେ ମାରି ନେଇଛ । ଲୁହାଛଡ଼ ନେଇ ସହରରେ ଭଡ଼ାଘର Colony ତିଆରି କରିଛ ।

ଗଜେନ୍ଦ୍ର ॥ ଦେଖନ୍ତୁ ଭଲରେ ଭଲରେ କହି ଦେଉଛି । ସେ ଚୋରି ଫୋରି କଥା ମୋ ଆଗରେ କହିବନି । Sirଙ୍କ ଆଗେ ଏକଥା ଶୁଣିଲା ବେଳକୁ ମୋ ମନ ଖୁବ୍ ଖରାପ ହେଉଛି ।

॥ ଅଣନବେ ॥

ତପନ ॥ Case ଟା Vigilance କୁ ଗଲା କେମିତି ? ବର୍ତ୍ତମାନ ଅବସ୍ଥା ଆପଣଙ୍କୁ ଆସିବ କପରି ?

ଗଜେନ୍ଦ୍ର ॥ ଶ୍ରୀକାନ୍ତ ବାବୁଙ୍କୁ ଦୁଧ ଦେଇ ଆପଣ ଘରେ ପୋଷିଲେ, ଶେଷକୁ ନାଗସାପ ମାଇଲା ଚୋଟେ । ଖୁବ୍‌ଷଣ ଭବେ ମାଇଲା, ଏଥର ସମ୍ଭାଳନ୍ତୁ ।

ତପନ ॥ ଗଜେନ୍ଦ୍ର, ତମେ ସତ······ମାନେ ତମେ ତ ସତ କହୁଛ ?

ଗଜେନ୍ଦ୍ର ॥ ନେଉଳ ବାବାଙ୍କର ଜୟ ହେଉ ଆଜ୍ଞା, କ କଥା ଇଏ ? ଗଜେନ୍ଦ୍ର ଭୂଷଣ କେବେ ସତ ଛଡ଼ା ଆଉ କହୁଛି କହେ ?

ତପନ ॥ Just a minute···ମୁଁ ସେ ଚଠିର ନକଲଟା ଆଣୁଚ । ଦେଖିବ । ସରକାରଙ୍କ ପାଖକୁ ଯେଉଁ ରିପୋର୍ଟ ଯାଇଛନ୍ତି କ ଯେ ସାଂଘାତିକ କାମ...(ତପନ ଭିତରକୁ ଗ୍ଲଲଗଲା ।)

ଶ୍ରୀକାନ୍ତ ॥ ମୋ ବିରୁଦ୍ଧରେ କ ଯେ ଚକ୍ରାନ୍ତ ଚଳେଇଚ ? ମୋ ଅନ୍ନରେ ପ୍ରତିପାଳିତ ହୋଇ ଶେଷରେ ମୋ ପଛରେ ଲାଗିବା ପାଇଁ ତମ ବିବେକ ମନା କଲାନି ?

ଗଜେନ୍ଦ୍ର ॥ ବିବେକ ଥିଲେ କଣ ଏମିତି ଖୁବ୍‌ଷଣ କାମ ସବୁ ହୋଇ ପାରନ୍ତା ? Sir ଦୁନଆଟା ସବୁ ଗୋଟେ ଭୂତ କାରଖାନା । ସବୁ ଅନ୍ଧାଶ୍ର କାରବାର—ଖୁବ୍‌ଷଣ । ଆପଣ ହେଇ ବୁଡ଼ିବୁଡ଼ି ପାଣି ପିଉଥିଲେ ଆଉ ଭାବୁଥିଲେ ଦୁନଆରେ ଅପଣଙ୍କୁ ବଳି ଚାଲାକ ଲୋକ ଆଉ କେଇ ନାହିଁ ।

ଶ୍ରୀକାନ୍ତ ॥ ଗଜେନ୍ଦ୍ର !

ଗଜେନ୍ଦ୍ର ॥ ପୁଣି ତ ରାଗିଲେ । ଯେମିତି ରାଗିବା ପାଇଁ ଆପଣ ଜଣେ ପଟା ନେଇଛନ୍ତି !

ଶ୍ରୀକାନ୍ତ ॥ ତୁମେ ମୋ ମୁହଁ ଉପରେ ଏ କଥା କହି ପାରୁଚ ଗଜେନ୍ଦ୍ର ! ଗୋଦାମରେ ସିମେଣ୍ଟ ଆଉ ଛଡ଼ Stock ନାହିଁ । ତମ ଉପରେ ବିଶ୍ୱାସ ରଖି ମୁଁ ଶ୍ରୀରାମପୁର Bridge କାମ ଗ୍ଲଡ଼

ଦେଇଥିଲ । ଦେଖିଲ୍ ବେଳକୁ କଣ ନାଁ । Bridgeଟା ଭୁଷୁଡ଼ି ପଡ଼ିଲା ।

ଗଜେନ୍ଦ୍ର ॥ ଟଙ୍କା କାହାର ଦରକାର ନ ଥାଏ ଆଜ୍ଞା ? ଆପଣ Black କରି ପଇସା କମେଇବେ, ଆଉ ଆମେ ସାତପୁରୁଷରୁ ଏମିତି ଖାଲି ଗୁମାସ୍ତାଗିରି କରି ଆସୁଥିବୁ ? ସିମେଣ୍ଟ ବ'ଟା Black କଲେ ତ ଯାଇ ପରିବାର ବଞ୍ଚିବେ !

ଶ୍ରୀକାନ୍ତ ॥ କାହିଁକି ? ଗୋଦାମର ସିମେଣ୍ଟଗୁଡ଼ା କ'ଣ ତୁମ ବାପାର ମାଲ ହୋଇଅଛି । ଶ୍ରୀକାନ୍ତ ଦାସ ଅନେକ କଳାବଜାରି କରିଚି । ତେବେ ତମ ଭଳି ଧପ୍‌ପାବାଜଙ୍କୁ ଉଡ଼େଇ ଦେବା ପାଇଁ ମୋତେ ବେଶି ସମୟ ଲାଗିବ ନାହିଁ ।

ଗଜେନ୍ଦ୍ର ॥ ଦେଖନ୍ତୁ ସେ ଧମକା ଧମକି କରି ମୁହଁ ଖରାପ କରନ୍ତୁନି । ରାଗିଗଲେ ଗଜ ଗୁମାସ୍ତା କାହାର ନୁହେଁ । ଏବେ ଯଦି ମୁଁ ମୁହଁ ଖୋଲି ଦେବି ଅବସ୍ଥା ଖରାପ ହୋଇଯିବ ।

ଶ୍ରୀକାନ୍ତ ॥ ଠିକ୍ ଅଛି । କୋର୍ଟରେ ମୁଁ ତମର ଉଚିତ୍ ଜବାବ ଦେବି ।

ଗଜେନ୍ଦ୍ର ॥ କହିଲି ପରା ଆଜ୍ଞା ସେ ହାଇକୋର୍ଟ ମୋତେ ଆଉ ଦେଖେଇବେନି । ମୁଣ୍ଡରେ ବାଳ ଯେତେ ସେତେଟା ମକଦ୍ଦମା କରି ଆସିଚି । କରନ୍ତୁ କେଉଁ କେଶ୍‌ଟା କରିବେ ? ଗୋଟି ଗୋଟି କରି ସବୁ ଗୁମର ଖୋଲି ଦେବି । ଶ୍ରୀରାମପୁର Bridge ପାଇଁ ଆପଣ କେତେ ଟଙ୍କା ନେଇଛନ୍ତି ଆଉ କେତେ କାମ କରିଛନ୍ତି ।

ଶ୍ରୀକାନ୍ତ ॥ ସେଇଟା ମୋର ବ୍ୟକ୍ତିଗତ କଥା । ସେ ହିସାବ କ'ଣ ମୁଁ ତୁମକୁ ଦେଇଥାନ୍ତି । ଟ୍ରେସ୍ କରି ପୁଣି ପାଇକପଣ ଦେଖେଉଛ ମୋ ଉପରେ ?

ଗଜେନ୍ଦ୍ର ॥ ପୁଣି ମୁହଁ ଖରାପ କରୁଛନ୍ତି । ଦେଖନ୍ତୁ । ଖରାପ ହୋଇଯିବ ଏଇଠି । ମୁଁ ବି ଗୋଟେ ଗ୍ରେଟ କାଟର କଣ୍ଟ୍ରାକ୍ଟର ହୋଇଗଲିଣି ।

॥ ଯବନିକା ॥

ଶ୍ରୀକାନ୍ତ ॥ ହଁ ତମେ ଗୋଟେ ଗ୍ରେଟ୍; ବିଶ୍ୱାସଘାତକ ।

ଗଜେନ୍ଦ୍ର ॥ ଆଜି ନୂଆଁ କଥାଟା କହିଲେ କଣ ? ଆପଣ ସରକାରୀ ଧନ ଗ୍ରେଟ୍‌ରେଇ ମଦ ପିଇଲେ ଆଉ ମୁଁ ଜଣେ କଳା ବଜାରୀର ପଇସାରେ କଟ୍ଲେଟା ଭକ୍ଷଣ କଲି । ତେଣୁ ଦୋଷଟାକୁ ମାପି ଚୁପି ହିସାବ କଲେ ମୋ' ଭାଗଟା ଟିକିଏ କମ୍ । ଆପଣଙ୍କୁ ପୁଣି ଥରେ ଦଣ୍ଡବତ, ଆମେ ଆମ ବାଟରେ ଗୁଲିଲୁ ।

[ଗଜେନ୍ଦ୍ର ଚୁଲିଗଲେ ଏବଂ ତପନ ଶଠି ନେଇ ଆସିଲେ]

ଶ୍ରୀକାନ୍ତ ॥ ଦେଖିଲେ ଦେଖିଲେ Sir, ଲୋକଟା କମିତି ବଦମାସ୍ ।

ତପନ ॥ ଗୁଡ୍ ଶ୍ରୀକାନ୍ତ—ସେଇଥିରୁ କ'ଣ ମିଳିବ ? (ଶଠି ଦେଖେଇ) ଏଇ ଦେଖ ।

ଶ୍ରୀକାନ୍ତ ॥ (ଶଠିଟା ପଢ଼ି) ହଉ ସାର୍, ଗୋଟାଏ କିଛି ବନ୍ଦୋବସ୍ତ କରିବା । ଆପଣ ଏମିତି ଭାଙ୍ଗି ପଡ଼ିଲେ କେମିତି ହେବ ! ବସନ୍ତୁ । ଏମିତି ପରିସ୍ଥିତି ଜୀବନରେ ବହୁତ ଆସିବ ।

ତପନ ॥ ମୋର ମୁଣ୍ଡ କ'ଣ ହୋଇ ଯାଉଛି—

ଶ୍ରୀକାନ୍ତ ॥ [ ଗୋଟାଏ ବୋତଲ ବାହାର କରି ] ସବୁ ମୁଣ୍ଡ ବଥାର ଏ ହେଉଛି ଏକମାତ୍ର Remedy !

ତପନ ॥ ଦିଅ—ମୁଁ ଆଜ raw ପିଇପିବି ।

ଶ୍ରୀକାନ୍ତ ॥ Mental tension ଆଦୌ ରହିବନି ।

ତପନ ॥ I want to forget everything !

ଶ୍ରୀକାନ୍ତ ॥ ସବୁ ଭୁଲିଯିବା ଉଚିତ୍ ।

ତପନ ॥ ଏକା ସାଙ୍ଗରେ ଏତେ ଗୁଡ଼ାଏ କଥା······ ।

ଶ୍ରୀକାନ୍ତ ॥ ଛାଡ଼ନ୍ତୁ ସାର୍ ! ମୋ' କଥା···ମାନେ ଶିଖାକୁ ପଚ୍ଚରିଲେ ?

ତପନ ॥ ଶିଖା ତମ ଉପରେ ଖୁବ୍ ଚିଡ଼ିଛି ।

॥ ବଂସ୍ଥାନବେ ॥

ଶ୍ରୀକାନ୍ତ ॥ ଭଉଣୀଙ୍କ ପ୍ରଭାବ ପଡ଼ୁଥିବ ବୋଧହୁଏ !

ତପନ ॥ କ'ଣ କରିବା ? ମୁଁ ତାକୁ ୨ ଦିନ ସମୟ ଦେଇଥିଲି । ବର୍ତ୍ତମାନ ଡ଼ାକେଇ ପଚାରିବା ? କଣ ଭାବୁଚ ?

ଶ୍ରୀକାନ୍ତ ॥ ବର୍ତ୍ତମାନ ? ଏଇଠି ସାର୍ ?

ତପନ ॥ Keep the bottle inside.

ଶ୍ରୀକାନ୍ତ ॥ (ବାକିତକ ପିଇନେଇ ବୋତଲ ରଖିଲେ ଓ ବ୍ୟାଗ୍ ଭିତରୁ ହାରଟିଏ ବାହାର କଲେ) କେମିତି ହୋଇଚି ?

ତପନ ॥ (ପରୀକ୍ଷା କରି) Wonderful ! ଶିଖା ପାଇଁ ?

ଶ୍ରୀକାନ୍ତ ॥ ସାତ ହଜାର୍ ଟଙ୍କା ଦାମ୍ । ଯଦି ଶିଖା ରାଜି ହୁଏ······

ତପନ ॥ (ଉଠିଯାଇ) ବର୍ତ୍ତମାନ ଶିଖାକୁ ଡ଼ାକୁଚି ! ଶିଖା ! ଶିଖା ! (ଶିଖା ଆସିଚି)

ଶିଖା ॥ କ'ଣ ଭାଇ ?

ତପନ ॥ ବସ୍ ।

ଶିଖା ॥ (ବସିଚି) କଥା କ'ଣ ଯେ ?

ତପନ ॥ ମାନେ... ମୁଁ ଯେଉଁ କଥା କହୁଥିଲି ।······ତୋର ମତେ ଆଜି ଫାଇନାଲ୍ କଥାଟା କହିବାର ଥିଲା ଯେ ! ଶେଷରେ ତୁ କ'ଣ decide କଲୁ ?

ଶିଖା ॥ ମୋ'ର କହିବା ନ କହିବାର କ'ଣ ଅଛି କହିଲ ? ମତେ ଏତେ ଐଶ୍ୱର୍ଯ୍ୟ ଭିତରେ ରଖିଚ ଯେ ବାପା ଆଉ ଭାଉଜଙ୍କ ଭାଗ୍ୟରେ ମଧ୍ୟ ସେତିକି ଜୁଟିନି । ତଥାପି ମୁଁ ଅକୃତଜ୍ଞ ହେବି ବୋଲି ଭାବିଚ ଭାଇ ?

[ତପନ କିଛି କହିବା ପାଇଁ ଚାହିଁଲେ, କିନ୍ତୁ ପରମୁହୂର୍ତ୍ତରେ ନିଜକୁ ସମ୍ଭାଳି ନେଲେ]

॥ ଦୃଶ୍ୟାନ୍ତର ॥

ତପନ ॥ ଦେଖ୍ ଶିଖା, ବିବାହଟା ନାରୀ ଜୀବନର ଗୋଟାଏ ବଡ଼ ଘଟଣା ।......ଏହା ପରେ ତୁ ଏଇ ଆଧୁନିକ ସଭ୍ୟତା ଭିତରେ ଆଉ ଏକ ନୂତନ ସୃଷ୍ଟି ପାଇଁ ସାଧନା ଆରମ୍ଭ କରିବୁ । ତୋର ସ୍ୱପ୍ନ ହେବ ତୋର ଭବିଷ୍ୟତ । ସେଇଥି ପାଇଁ ମୁଁ ତୋ ଉପରେ ତୋ ବିବାହର ଦାୟିତ୍ୱ ଛାଡ଼ି ଦେଇଛି । ମୁଁ ଆଉ ଚାହୁଁନି ତୁ ବେଶି ଦିନ ଅବିବାହିତା ରହ ।

ଶିଖା ॥ କ'ଣ ବାହା କରି ଦେବାକୁ ଚାହୁଁଛ ? ବେଶ୍ ମୁଁ ବି ବେଶି ଦିନ ଏଇଟି ଘରଟାକୁ ନଷ୍ଟ ହୋଇଥିବା ଦେଖି ପାରିବିନି । ଠିକ୍ ଅଛି ମୁଁ ଚାଲିଯିବି ।

(ଶେଷ ଆଡ଼କୁ କଣ୍ଠ ଭାଙ୍ଗି ପଡ଼ିଲା)

ତପନ ॥–ଏଥିରେ Sentimental ହେବାର କିଛି ନାହିଁ ? ଏଇଟି ଶ୍ରୀକାନ୍ତ ବିସିତ । ଶ୍ରୀକାନ୍ତ ତୋର କ୍ଲାସ୍‌ମେଟ୍ and he sincerely wants you ! ତୋର ମତାମତ କଣ ?

ଶ୍ରୀକାନ୍ତ ॥ ତମ ଆଗରେ ମୁଁ ବଜାଖି, ଛତରା ହୋଇପାରେ; କିନ୍ତୁ ମଣିଷ ହିସାବରେ ମତେ କେବେ ତମେ ପରୀକ୍ଷା କରିନା !

ଶିଖା ॥ ଶ୍ରୀକାନ୍ତ ! ମୁଁ ଏ ପର୍ଯ୍ୟନ୍ତ ସେ କଥା କାହାକୁ କହିନି ।

ଶ୍ରୀକାନ୍ତ ॥ I am sorry for that. ମୁଁ ସେଥିପାଇଁ କ୍ଷମା ମାଗି-ପାରେ ।

ଶିଖା ॥ ସେଇଟା ତମର ଦୋଷ ନଥିଲା—ତମ ନିଶାର ! ତେବେ ଜୀବନ କହିଲେ ତମେ କ'ଣ ବୁଝ ?

ଶ୍ରୀକାନ୍ତ ॥ ଏତେ କଥା ବୁଝିବା ପାଇଁ ସମୟ କାହିଁ ? ଜୀବନଟା ଖୁବ୍ ଛୋଟ ଯେ...ଯାହା enjoy କରିବାକୁ ଚାହୁଁଚ ଶୀଘ୍ର କରି ଯାଅ—ମୃତ୍ୟୁ ପୂର୍ବରୁ ଯେମିତି ପଶ୍ଚେଇ ପଶ୍ଚେଇ ମରିବାକୁ ନ ହୁଏ ।

ଶିଖା ॥ ତମେ ତ କେବଳ ତମ ପାଇଁ ବଞ୍ଚନା ଶ୍ରୀକାନ୍ତ । ଏଇଠି, ଏଇ ସମାଜରେ ତମ ଭଳି ଅନ୍ୟ କେତେ ଜଣ ଅଛନ୍ତି ବୋଲି ତମର ସ୍ମୃତି ଅଛି, ପରିଚୟ ନଥାଇ ତମେ କେହି ନୁହେଁ ! ତୁମର ପରିଚୟ କ'ଣ ? ତମେ ଜଣେ ପଶୁ ?

ଶ୍ରୀକାନ୍ତ ॥ (ବ୍ୟାଗ୍ ଭିତରୁ ହାର ବାହାର କରି ଠିଆ ହୋଇଯାଇ) ଏଇଟା ମୋର ପରିଚୟ ? କଲିକତାରେ ଏହାର ଦାମ୍ ସାତହଜାର ଛ'ଶହ ବାଷଠି······

ତପନ ॥ ସ୍ୱଦେଶରେ ଆଜିକାଲି ଗୋଟେ Crisis of choice ହୋଇଚି ବୋଲି ଖବର । ମଣିଷ ଏତେ ବୋକା ଯେ ଆଗରେ ଏତେ ଗୁଡ଼ାଏ ରାସ୍ତା ଥାଉ ଥାଉ ସେ କହୁଛି ଗୋଟାଏ ଝିଟିକା ଉପରେ ଠିଆ ହୋଇଚି ! ଶିଖା ତୋର ସେଇ ଅବସ୍ଥା ଆସି ଯାଇନି ତ ?

ଶିଖା ॥ ନା, ତମେ ଯେତେବେଳେ କହୁଚ, ବାଧ୍ୟ ଭଉଣୀ ପରି ମାନି ନେବା ଉଚିତ୍ । ନ ହେଲେ ଘରେ ହୋଇଯିବ ଗୋଟାଏ ପାଦ ଖସି ଯାଇଥିବା ଝିଅ—ବଜାର ଘାଟରେ ମତେ ଦେଖିଲେ ହିଁ ଟୋକାମାନେ ହୁଇସିଲ୍ ବଜାଇବେ, ଆଉ ସମସ୍ତେ ମୋ ନାଁରେ ଗୁଜବ କରିବେ, ମୁଁ ଜାଣେ ।

ଶ୍ରୀକାନ୍ତ ॥ ମୁଁ ଜାଣେ ତୁମେ ସୁନା ଝିଅ । ଖୁବ୍ ସହଜରେ ସବୁକଥା ବୁଝିପିବ ! ପାଖକୁ ଆସିଲ, ଦେଖିବା—ହାରଟା ବେକକୁ କେମିତି ମାନୁଚି ?

ଶିଖା ॥ କାଇଁକି ହାରଟା ତମେ ପିନ୍ଧେଇ ଦଉନା ? ମୁଁ ଅଧାଅଧି ତମର ହୋଇଗଲିଣି !!
[ହସିଚି ବ୍ୟଙ୍ଗ କଲାଭଳି]

ଶ୍ରୀକାନ୍ତ ॥ (ଆଗେଇ ଯାଇ) Sure (ପିନ୍ଧେଇ ଦେଇଚି)

ଶିଖା ॥ ଦେଖିଲ ଭାଇ ? କେମିତି ଦିଶୁଚି ? ମାନୁଚି ?

॥ ଯବନିକା ॥

ତପନ ॥ Wonderful !! Wonderful !! (ହଠାତ୍ ମୁକ୍ତକାନ୍ତ ଆସି ଦେଖା ଦେଇଛି)

ଶିଖା ॥ ଆରେ, ମୁକ୍ତକାନ୍ତ ବାବୁ ଯେ ! ଆସନ୍ତୁ ଆସନ୍ତୁ ! ଏଇଟା ଆମର ପାରିବାରିକ ନାଟକର ଅନ୍ୟତମ ଦୃଶ୍ୟ ! ବେଶ୍ ଶ୍ରୀକାନ୍ତ—ତମେ ଏ ପଟକୁ ଚାଲିଆସ···(ବ୍ୟଙ୍ଗ କରି ଭଳି) । ମୁକ୍ତକାନ୍ତ ବାବୁ ଆସିଛନ୍ତି—ଅନ୍ତତଃ ଆମ ନାଟକର ଏଇ ଅଂଶଟା ଦେଖି ନଅନ୍ତୁ !!

ମୁକ୍ତକାନ୍ତ ॥ ଓ·· ହୋ···ବୁଝିଲି । ଡ଼ାକ୍ତର ବସୁ କହନ୍ତି ଜୀବନ ଗୋଟାଏ······

ଶିଖା ॥ ଛି ? ମୁଁ ଅଭିନୟ କରିପାରେ ? ଏଇଟା ହିଁ ଆମ ଭଦ୍ର ଜୀବନର ଅଭିନୟ !

ମୁକ୍ତକାନ୍ତ ॥ ମାନେ......ମୁଁ ଠିକ୍······

ଶିଖା ॥ ନା ବୁଝି ପାରିବେ ନାହିଁ । ଆହୁରି ଜଟିଳ ହେବାକୁ ପଡ଼ିବ ।

ଶ୍ରୀକାନ୍ତ । ଏଇଟା ଗୋଟାଏ rouge......ମାନେ......

ତପନ ॥ ସେଇଟା, ପାଗଳଟାଏ····· ତା କଥାର ମୂଲ୍ୟ କଣ ଯେ ? ···idiot ଆସି ଉପରେ ପଡ଼ି କଥା କହୁଛି ?

ଶିଖା ॥ କିଏ ପାଗଳ ନୁହେଁ ? ଆମେ ସମସ୍ତେ ବୋଧହୁଏ ? (ମୁକ୍ତକାନ୍ତକୁ) ଦେଖିଲେ ମୁକ୍ତକାନ୍ତ ବାବୁ ! ଆମ ଦୁହିଁଙ୍କର ଯୋଡ଼ି କମିତି ମାନୁଛି ?

ମୁକ୍ତକାନ୍ତ ॥ (ଶ୍ରୀକାନ୍ତଙ୍କୁ) ଆପଣ ଶିଖା ଦେବୀଙ୍କୁ ବିବାହ କରୁଛନ୍ତି ?

ଶ୍ରୀକାନ୍ତ ॥ Mind your own business. ତମର ଏସବୁରୁ କ'ଣ ମିଳିବ ?

ମୁକ୍ତକାନ୍ତ ॥ କିନ୍ତୁ ଶିଖା ଦେବୀଙ୍କୁ କାହିଁକି ? ଯେ କୌଣସି ଝିଅକୁ ତ ବାହା ହୋଇ ପାରନ୍ତେ !

॥ ଛୟାନବେ ॥

ତପନ ॥ ମୁକ୍ତକାନ୍ତ, ତମେ ଏଇଠୁ ଗଲ—ଯିବକି ନାହିଁ ? ବୁଦ୍ଧୁ !

ମୁକ୍ତକାନ୍ତ ॥ ମୁଁ ଆଦୌ ବୁଦ୍ଧୁ ନୁହେଁ......ବୋକା ନୁହେଁ...ମୁଁ ବର୍ତ୍ତମାନ ଜଣେ ଭଲ ମଣିଷ ! ଦେଖୁ ନାହାନ୍ତି ?

ଶ୍ରୀକାନ୍ତ ॥ Idiot ! ଏଇଟା ଗୋଟାଏ କୁଆଡ଼ୁ ଆସି......

ଶିଖା ॥ ଶ୍ରୀକାନ୍ତ ହୋସ୍‌ରେ ଥାଇ କଥାବାର୍ତ୍ତା କର, କାହାକୁ ତମେ କ'ଣ କହୁଚ ?

ମୁକ୍ତକାନ୍ତ ॥ ନା, ସେ କହନ୍ତୁ । ତାଙ୍କର କହିବା ଉଚିତ୍ । କିନ୍ତୁ ଆପଣ କୁହନ୍ତୁ ଶିଖାଦେବୀଙ୍କୁ କାହିଁକି ବାଧା ଦେବେ ? (ଶିଖାକୁ) ଶିଖା ! ମୁଁ ତମକୁ ସେଦିନ କହିଥିଲି ନା—ତମର ଦରକାର ଟିକିଏ ମମତା ଆଉ ଅନାବିଳ ସ୍ନେହ । ମୁଁ ଶପଥ କରି କହୁଚି ମୁଁ ସେଇତକ ତୁମକୁ ଦେଇପାରିବି ।

ଶ୍ରୀକାନ୍ତ ॥ My mood is off, ମୁଁ ଯାଉଛି ସାର୍ ।

ତପନ ॥ Please ଶ୍ରୀକାନ୍ତ—ତମେ ରହ, ଏଇଟାକୁ ଦି'ଟା ଚଟକଣି ଦରକାର ହେଲଣି ।

ଶ୍ରୀକାନ୍ତ ॥ ମୋତେ ଆପଣମାନେ ଏଇଠି ବଦ୍‌ନାମ କରୁଛନ୍ତି ? ମାନେ, ଗୋଟାଏ ପାଗଳ ହାତରେ......

ଶିଖା ॥ ଶ୍ରୀକାନ୍ତ ! ତମେ ଗୋଟାଏ ପଶୁ ! ତମେ ଗୋଟାଏ......

ଶ୍ରୀକାନ୍ତ ॥ ଶିଖା ! ମୁଁ ଜାଣିଥିଲି ତମେ ଏମିତି ଗୋଟାଏ ପାଗଳ ପ୍ରତି......

ତପନ ॥ ସବୁ ଗଣ୍ଡଗୋଳର କାରଣ ହେଲା ଏଇ ଇଡିଏଟ୍ ।
(ଘୁଷୁରାଟାଏ ମାରିଲେ)

ଶିଖା ॥ ଭାଇ ! !

ମୁକ୍ତକାନ୍ତ ॥ ନା (ଚିତ୍କାର କରି) ଆପଣମାନେ ଶିଖାର ଜୀବନଟାକୁ ଏମିତି ନଷ୍ଟ କରି ପାରିବେ ନାହିଁ, ଆପଣମାନେ ନଷ୍ଟ୍ୟୁର ।

॥ ସତାନବେ ॥

ଶ୍ରୀକାନ୍ତ ॥ Shut up (ଡ଼ଣ୍ଟି ଚପିବା ପାଇଁ ଗଲେ)

ତପନ ॥ ହଅ, ହଅ ଆଉ ଗୋଟାଏ ଗୁପ୍ତଡ଼ା—

ମୁକ୍ତିକାନ୍ତ ॥ ଆଉ ମୋର ଡ଼ର ନାହିଁ । ମୋତେ ବ ଏମିତି କାମୁଁଡ଼ା-
କାମୁଡ଼ି କରିବାକୁ ପଡ଼ିବ । ପଶୁ ହେବାକୁ ପଡ଼ିବ ।
(ଏଇଥର ପ୍ରଥମ ଥର ପାଇଁ ମୁକ୍ତିକାନ୍ତ ଗଳାରେ ଦୃଢ଼ତା)

ତପନ ॥ What nonsense !

ଶ୍ରୀକାନ୍ତ ॥ ମୁଁ ଆଜ ଯାଉଚି ସାର୍······(ଚୁଲିଗଲା)

ତପନ ॥ (ଶ୍ରୀକାନ୍ତ ପଛେ ପଛେ ଯାଇ ଶ୍ରୀକାନ୍ତ···ଶ୍ରୀକାନ୍ତ···
Please······(ବାହାରକୁ ଗଲେ) (ମୁକ୍ତିକାନ୍ତ ସେମିତି
ଠିଆ ହୋଇଥାଏ, ଶିଖା ଆସ୍ତେ ଆସ୍ତେ ଯାଉଛି ଓ
ମୁକ୍ତିକାନ୍ତର କାନ୍ଧରେ ହାତ ରଖି)

ଶିଖା ॥ (କଣ୍ଠ ବାଷ୍ପରୁଦ୍ଧ) ମୁକ୍ତିକାନ୍ତ ! କାହିଁକି ମୋ ଲାଗି ତମେ
ଏ ଅପମାନ ପାଇଲ ? ମୁଁ ବୁଝିପାରୁନ······ମୁଁ ତମ ପାଇଁ
କଣ କରିପାରିବ ?

ମୁକ୍ତିକାନ୍ତ ॥ କିନ୍ତୁ ମୋ ଆଖି ଆଗରେ କେମିତି ତମକୁ ନଷ୍ଟ ହେବାକୁ
ଦେଇଥାନ୍ତି ଶିଖା ? ମୁଁ ତମକୁ ଭଲପାଏ । ସମ୍ମାନ
କରେ ।

ଶିଖା ॥ ନା·· ନା···ଜାଣି ଜାଣି ତମର ନିଷ୍ପାପ ଜୀବନଟାକୁ ମୋ
ସ୍ପର୍ଶରେ ଅପବିତ୍ର କରି ଦେଇ ପାରିବିନି !!

ମୁକ୍ତିକାନ୍ତ ॥ ଏ ସଭ୍ୟତା ତମ ମନରୁ ସାହସ ଟିକକ ବ କାଢ଼ିନେଇଛି ?
ତମେ ଯାହା ଗୁହ୍ୟଁଚ, ସଭ୍ୟତାର ଉପରେ, ସମାଜର
ଉପରେ ସେଇତକ ବ କରିପାରୁନା । ତା' ହେଲେ
ଡାକ୍ତର ବସୁ ଯାହା କହୁଥିଲେ କ'ଣ ସବୁ ଭୁଲ ?

ଶିଖା ॥ ସବୁ······ସବୁ ଭୁଲ······ଏତେଟା ସରଳ ହୋଇ
ତମେ ଏ ସଭ୍ୟତାର ଛଳନା ଭିତରେ ବଞ୍ଚି ପାରିବନି

ମୁକ୍ତକାନ୍ତ ? ତୁଏତ ଏମାନେ ସମସ୍ତେ ତମକୁ ପାଗଳ ଆଉ ନିର୍ବୋଧ ଭାବି ଘୃଣା କରିବେ······ସେତେବେଳେ ତମେ ଦେଖିବ···ଡ଼ାକ୍ତର ବସୁ କହିଥିବା ଆଦର୍ଶ ଭିତରୁ ଗୋଟିଏ ହେଲେ ଆମ ଜୀବନ ଭିତରେ ନାହିଁ, ତମେ ଆହୁରି ଆହୁରି ଯନ୍ତ୍ରଣା ପାଇବ । ନାଁ······ମୁଁ ଚାହୁଁନି··· ତମେ ମୋ ଲାଗି ଆହୁରି ଆହୁରି ଯନ୍ତ୍ରଣା ପାଇବ । ନା···ମୁଁ ଚାହୁଁନି······ତମେ ମୋ ଲାଗି ଏଇଠି ମାଡ଼ ଖାଇବ······ ନା...ମୁଁ ଏସବୁ ଦେଖିପାରିବିନି······(କାନ୍ଦି କାନ୍ଦି) (ଶିଖା ଚାଲିଯାଇଛି) । (left door ଦେଇ)

ମୁକ୍ତକାନ୍ତ ॥ ଡ଼ାକ୍ତର ବସୁ ! ଆଶ୍ଚର୍ଯ୍ୟ ଆପଣ ମୋତେ ଏମିତି ଏକେଲା କରି ଏତେ ଶକ୍ତିହୀନ କରି ଏ ସଭ୍ୟତା ଭିତରକୁ ଠେଲି ଦେଲେ କାହିଁକି ? ଓଃ (ଭୀଷଣ ଡରିଯାଇ)...... ମତେ ଏ ଧ୍ୱଂସ ମଣିଷଗୁଡ଼ାକୁ ଦେଖି କେମିତି କେମିତି ଲାଗୁଚି (ଆକାଶକୁ ଚାହିଁ) ହେଇ ! ସବୁଜ ରଙ୍ଗର କଣ୍ଟାରେ ଭିଆରି ମୁକୁଟଟିଏ କ'ଣ ସେଇଠା······ଏଇ ଆକାଶ ଉପରୁ ଖସି ଆସୁଚି···(ହଠାତ ତାର ମନେ ହୋଇଚି ଯେମିତି ସେ କଣ୍ଟାଗୁଡ଼ାକ ତା ମୁଣ୍ଡ ଭିତରେ ଗଳିଗଲେ) ଆଃ !! (ଯନ୍ତ୍ରଣାରେ ଛଟପଟ ହୋଇ) ମୁଁ କି ଭଗ୍ନଙ୍କର ଭାବେ ହଳଦିଆ ବର୍ଣ୍ଣ ରକ୍ତରେ ଜୁଡ଼ୁବୁଡ଼ୁ ହୋଇଯାଉଚି......

ମୁକ୍ତକାନ୍ତ ସଙ୍କୁଚିତ ହୋଇ ଆସିଲାବେଳକୁ ଅନ୍ୟପଟୁ ଶ୍ରୀକାନ୍ତକୁ ଛାଡ଼ିଦେଇ ଆସିଚି ତପନ [ଭୟଙ୍କର ଧ୍ୱଂସ ମନେ ହେଉଚି ସିଏ ]

ତପନ ॥ ଶ୍ରୀକାନ୍ତ ଚାଲିଗଲା···... । କେବଳ ତମରି ପାଇଁ (ଧ୍ୱଂସ ଭାବରେ ମାଡ଼ିଯାଇଚି ମୁକ୍ତକାନ୍ତ ପାଖକୁ ଯିମିତି ତାକୁ ଛିନ୍ ଭିନ୍ କରି ପକେଇବ) ତୁମେ ମୋର

॥ ଅନେଶ୍ବତ ॥

ପାରିବାରିକ ଶାନ୍ତି ନଷ୍ଟ କରୁଚ···ତମଲାଗି ଶିଖା ବାହା ହୋଇ ପାରିବନି !! Yes···you, bastard କାହିଁକି ମୁଁ ତୋତେ ଏ ଘରେ ସ୍ଥାନ ଦେଇଥିଲି······ ଶେଷରେ ଏମିତି କରିବୁ ବୋଲି ? Rascal...(ପିଟିଚ୍ଛି ଜଘନ୍ୟ ଭାବରେ) ମୁକ୍ତିକାନ୍ତ ଅତି ନିର୍ଘାତ ଭାବରେ ଖାଲି କାନ୍ଦୁଚ୍ଛି । ଭିତରୁ ପ୍ରଭଞ୍ଜନ ବେଗରେ ଆସିଚନ୍ତି ମେଜର ବର୍ମା ।

ମେ. ବର୍ମା ॥ କିଏ ? କିଏ ସେଇ ଡ୍ରାଗନ୍ ? କିଏ ସେଇ······
(ମୁକ୍ତିକାନ୍ତକୁ ମୁକ୍ତ କରି ତପନ ବର୍ମାର କଲର ଧରି)
ଆଜି ତୋର ମୁଁ ରକ୍ତ ପିଇଯିବି ! ଇଡ଼ିୟଟ୍ !

ତପନ ॥ ବାପା !!! (ଚିତ୍କାର କରି)

ମେ. ବର୍ମା ॥ Hands up !! or I shall kill you !

ତପନ ॥ ଛି...ଛି...ତୁମକୁ ବାପା ବୋଲି ଡାକିବାକୁ ଘୃଣା ଲାଗୁଚ୍ଛି ।
କିଏ ତମକୁ ସେ ଘରୁ ଖୋଲିଲା ?
ହରିଆ·· ହରିଆ......

ହରିଆ ॥ ବାବୁ ! (ଆସିଚି)
(ମେଜର ବର୍ମା ଯାଇ ମୁକ୍ତିକାନ୍ତ ଦେହରୁ ଧୂଳି ଝାଡ଼ି ଦେବାରେ ଲାଗିଲେ)

ତପନ ॥ ଏ ପାଗଳଟାକୁ ସେ ଘରେ ହାତ ଗୋଡ଼ ବାନ୍ଧି ପକେଇ ଦେବାପାଇଁ ମୁଁ କହିଥିଲି···କିଏ ଖୋଲିଲା ?

ହରିଆ ॥ ଶିଖାଦେଈ...ଶିଖାଦେଈ ଖୋଲିଛନ୍ତି ।

ମେ. ବର୍ମା ॥ ଇଞ୍ଜିନିୟର୍ ତତେ ସାବଧାନ କରେଇ ଦଉଚି । ମଦ ଖାଇ ଯଦି ଏ ଘରେ ଜଘନ୍ୟ କାଣ୍ଡ ସୃଷ୍ଟି କରୁ ତା' ହେଲେ ରାଇଫଲ୍‌ର ସଙ୍ଗୀନ୍ ମୁନରେ ତୋ ଗୁଣ୍ଡଟାକୁ ······ହଁ...ତୋତେ ମୁଁ ଶେଷଥର ପାଇଁ କହି ଦେଉଚି ହରିଆ— ! ତୁ ଯା'—

॥ ଶେଷ ॥

(ହରିଆ ଯାଇଛି । ମୁକ୍ତିକାନ୍ତକୁ ନେଇ ମେଜର ବର୍ମା ବହିର୍ଗୃହଟି ଦେଖାଇଦେଇ ଯାଇଛନ୍ତି । ତପନ ଦାନ୍ତକାମୁଡ଼ି ସେଇଠି ପରିଜନ୍ଥୁ ମାନନେଇଛୁ । ପରେ ପରେ ସ୍ୱଗତୋକ୍ତି କରିଛୁ) ।

ତପନ ॥ ଓଃ ! ଏମିତି ଆଉ କେତେ ଦିନ ? କେତେ ଦିନ ଆଉ ଏମିତି ନିଜ ଗୁଣ୍ଡିରେ ଛୁରି ଚଳେଇ ମୁଁ ବଞ୍ଚିବି ? ମୋତେ ଟେବୁଲ ଉପରେ ଶୁଆଇଦେଇ, ନିଜକୁ ଟିକ୍ ଟିକ୍ କରି କାଟୁଚି ଆଉ ପରୀକ୍ଷା କରୁଚି ମୋର ବ୍ୟକ୍ତିତ୍ୱକୁ......। ଆଃ ମୁଁ କେତେ ସହସ୍ର ଖଣ୍ଡରେ ବିଭକ୍ତ ! ସବୁ ଜାଣି ସବୁ ଅନୁଭବ କରି ମଧ୍ୟ ମୁଁ ପଥର । ମୋ ଆଖି ଆଗରେ ଏମିତି ମୋର ମୃତ୍ୟୁ ହେବ......ଧୀରେ ଧୀରେ ମୁଁ ଅନ୍ଧାରକୁ ପାଇବା ପାଇଁ ଖସିଯିବି ଗୋଟିଏ ଅଜଣା ବିବର ଭିତରକୁ......ଅନ୍ଧାରର ବିବର......ମୁଁ ଅନ୍ଧାରକୁ ପିଇବି......ଅନ୍ଧାରରେ ମୋ ଭିତରେ ଚରିଯିବ...... ତା' ପରେ ଅନ୍ଧାର ମତେ ସେଇ ପଙ୍କ ଭିତରେ ବୁଡ଼େଇ-ଦବ......ଏବଂ ସେତେବେଳେ ଆଜ୍ଞା ପଢ଼ୁନାପୁକ, ରକ୍ତ ସବୁ ଏକ ପ୍ରକାର ହୋଇଯିବେ.........।

(ହଠାତ୍ ଟେଲିଫୋନ୍ ବାଜି ଉଠିଛି । ତପନ ଟେଲିଫୋନ ଧରିଛନ୍ତି)

ହ୍ୟାଲୋ......(ହଠାତ୍ ଚମକି) ଓ ! ଆପଣ ? (ମୁହଁ ରୁକ୍ଷ ହୋଇ ଉଠିଲା) କ'ଣ କହିଲ ? Birthday ! ବର୍ଷ ଭିତରେ ତପନ କେତେଟା ଜନ୍ମଦିନ ହୁଏ ? ହଜାରେ ଟଙ୍କା ? How dare you ? —ନା କ'ଣ କହିଲ ? ମୋ ଚିଠିଗୁଡ଼ାକ ନେଇ ଆମ ଘରେ ଦେଖେଇବ ? ମୋତେ Blackmail କରୁଚ ? All-right. ମୁଁ ତୁମକୁ ସତର୍କ କରିଦେଉଚି ଆଜ୍ଞା ! ମୋ ଚିଠି ଯେମିତି ମୁଁ

ଫେରସ୍ତ ପାଏ ଆଜ......ଏଇ......ବର୍ତ୍ତମାନ......
ମୁଁ ଯାଉଚ ।

(ଫୋନ୍ ରଖିଦେଲେ ଓ ବିବ୍ରତ ଭାବରେ ପଦଚାରଣ କଲେ । Or I will—bloody witch ? ବର୍ତ୍ତମାନ ମୁଁ ଯିବି... । (ଗାଡ଼ିର ଚାବିଟା ନେଇ ଚାଲିଗଲେ ବାହାରକୁ ଗାଡ଼ି ହର୍ଣ୍ଣ ଶୁଭିଲା । )

[ ଏଇ phoneରେ ସମସ୍ତ କଥାବାର୍ତ୍ତା ପରଦା ଆଡ଼ୁ ଆଳରେ ରହି ରଞ୍ଜନ ଶୁଣିଛନ୍ତି । ତପନ ଚାଲିଗଲା ପରେ ସେ ଆସିଛନ୍ତି ସୁଟ୍‌କେଶଟା ନେଇ । ପଛେ ପଛେ ଶକ୍ତା ରଞ୍ଜନର କୋଟ ଇତ୍ୟାଦି ନେଇ ଆସିଛି ]

ରଞ୍ଜନ ॥ ଛି...ଛି...ଛି...ଏ ଘରଟା ଅସଭ୍ୟ ପଶୁମାନଙ୍କର ଗୋଟାଏ ଜଙ୍ଗଲରେ ପରିଣତ ହୋଇଗଲାଣି । ଆଉ ଗୋଟାଏ ମିନିଟ୍ ନୁହେଁ । ସହିବାର ତ ଗୋଟାଏ ସୀମା ଅଛି...... !!!

ଶକ୍ତା ॥ ସେ ପଚ କଥାଗୁଡ଼ାକ ଘାଣ୍ଟି ଆଉ ଲାଭ କ'ଣ ଅଛି ଭାଇ ?

ରଞ୍ଜନ ॥ ପଚ କଥା—କେଉଁଗୁଡ଼ାକ ପଚ କଥା ? ଏଇ ତ ବର୍ତ୍ତମାନ ମୁଁ ଶୁଣିଲି ଇଞ୍ଜିନିଅର୍ ସାହେବ୍ ଏ ଘରେ ମଦ ପିଇ ମାତାଲଙ୍କ ପରି ବ୍ୟବହାର କରୁଥିଲେ ।

ଶକ୍ତା ॥ ତମେ ଆଉ ଏ ବିଷୟରେ ମୁଣ୍ଡ ଖେଳାନା ଭାଇ ! ସବୁ ଭୋଗିବା ପାଇଁ ତ ମୁଁ ଜନ୍ମ ହୋଇଥିଲି ।

ରଞ୍ଜନ ॥ ଭୋଗିବୁ ? କାହିଁକି ? ଆଉ ଗୋଟାଏ ମିନିଟ୍ ବି ନୁହେଁ । ଏଇ ସାଢ଼େ ଛ'ଟା ବେଳେ ଟ୍ରେନ୍ ! ଆମେ ଚାଲିଯିବା । ଘରେ ତୋର କୌଣସି ଜିନିଷର ଅଭାବ ରହିବ ।

ଶକ୍ତା ॥ ସିଏ ଆସିଲେ ତାଙ୍କୁ ଟିକିଏ କହିଦେଇ ଯିବା....... ।

ରଞ୍ଜନ ॥ ଓଃ କ'ଣ ଯେ ତୁ କହୁଚୁ ଶକ୍ତା ! ଯୋଉ ସ୍ୱାମୀ ତୋତେ divorce କରିବା ପାଇଁ କହିଦେଇଗଲା ତାର ପଦଧୂଳି

ନେଇ ଗଲେ କ'ଣ ସ୍ୱର୍ଗପ୍ରାପ୍ତି ହୋଇଯିବ ? ତୁ କ'ଣ ଭାବୁଚୁ ଗତ ୧୨ଟା ପୂର୍ବରୁ ଯିଏ ଫେରିବ ? ନା— ତୁ' ଯା—ଲୁଗା ବଦଳେଇ ଆସିବୁ, ଜଲ୍‌ଦି ।

(ମେଜର ବର୍ମା ବଗିଚ୍ଚପଟୁ ଆସିଲେ)

ମେ. ବର୍ମା ॥ ଶୁଣିଲି, ତୁ କୁଆଡେ ବାପ ଘରକୁ ଚାଲିଯାଉଛୁ ମା' !

ରିକ୍ତା ॥ ହଁ ବାପା ! ଡ଼ାକ୍ତର କହୁଛନ୍ତି ସ୍ଥାନ ପରିବର୍ତ୍ତନ କରିବା ପାଇଁ !

ମେ. ବର୍ମା ॥ ମୁଁ ସବୁ ବୁଝିଛି ମା । ସମସ୍ତେ ଯିବେ । ଯାଅ ! ସମସ୍ତେ ଚାଲିଯାଅ । ଖାଲି ମୁଁ ଏଇଠି ପଡ଼ି ରହିଥିବି ଅଥର୍ବ ଭଳି ........ବର୍ମା ପରିବାରର ଅବକ୍ଷୟ ଦେଖିବା ପାଇଁ ।

ରଞ୍ଜନ ॥ ଆପଣ ଥାଇ ରିକ୍ତା ଏ ଘରେ ଗୃହକର୍ତ୍ତ୍ରୀର ସମ୍ମାନ ବି ପାଇଲା ନାହିଁ । ଶେଷରେ ଇଞ୍ଜିନିୟର ସାହେବ ମୋତେ ବି ଛୁଇଁ ନାହାନ୍ତି । କଣ ନେଇ ରିକ୍ତା ଏ ଘରେ ପଡ଼ି ରହିବ ? ଖାଲି ଦ'ପଟ ଶଙ୍ଖା ଆଉ ଟୋପାଏ ସିନ୍ଦୂର କ'ଣ ତାକୁ ଶାନ୍ତି ଦେଇପାରିବ ନାହିଁ ?

ମେ. ବର୍ମା ॥ ମୋତେ କହୁଛ ରଞ୍ଜନ ? ମୁଁ ଏ ଘରର କିଏ ? ଶତ୍ରୁ ପକ୍ଷର ଗୁପ୍ତଚର ଭଳି ଅଟକ ବନ୍ଦୀ ହୋଇ ତପନ ବର୍ମାର ଅନୁଗ୍ରହରେ ପଡ଼ିରହିଛି ଏଇଠି ।

(ରଞ୍ଜନ ଯାଇଛି ଭିତରକୁ ଅନ୍ୟ ଜିନିଷ ଆଣିବା ପାଇଁ)

ରିକ୍ତା ॥ ମୁଁ ପୁଣି ଆସିବି ଯେ ବାପା ! ଦେହ ଭଲ ହୋଇଗଲେ ପୁଣି ଫେରି ଆସିବିନି ?

ମେ. ବର୍ମା ॥ ଡାଇଭୋର୍ସ କଲାପରେ ଫେରି ଆସିବୁ ? କାହିଁକି ? କୋଉ ଆଶାରେ ଫେରି ଆସିବୁ ? ଆସିଲେ ଏଇଠି ଅତ୍ୟାଚାର ଛଡ଼ା ଆଉ କ'ଣ ପାଇବୁ ?

॥ ଶଦେହ ଛନ ॥

ଶିଲ୍ପା ॥ ଥାଉ ବାପା ! ଯେତେବେଳେ ସେ ମୋର ସ୍ୱାମୀ ! ଯେତେ ଅତ୍ୟାଚାର କଲେ ସୁଦ୍ଧା......

ମେ. ବର୍ମା ॥ ଏଇଠି ! ଏଇଠି ତମେମାନେ ଭୂଲ୍ କରୁଛରେ ମା, ଯୁଦ୍ଧ ଦରକାର, ବିପ୍ଳବ ଦରକାର । ବିନା ଯୁଦ୍ଧରେ କେଉଁ ଦେଶର କେବେ ପରିବର୍ତ୍ତନ ହୋଇଛି ? War is inevitable ! ମୋର କଣ ମନ ହେଉଛି ଜାଣୁ ! ରାଇଫଲଟା ବାହାର କରି ସେ ଇଞ୍ଜିନିୟର ବ୍ରୁଟଟାର ମୁଣ୍ଡ ଉଡ଼ାଇ ଦିଅନ୍ତି ।

(ମେଜର ବର୍ମାଙ୍କର ଦେହ ଥରି ଉଠୁଥାଏ)

ଶିଲ୍ପା ॥ ବାପା !

ମେ. ବର୍ମା ॥ ମୁଁ ଜାଣେ ମା ! ତତେ ବାଧୁଥିବ, ହେଲେ ମୋତେ କଣ ବାଧୁନାହିଁ ? ତୁ ଏ ଘରୁ ତପନର ଅତ୍ୟାଚାର ସହି ନପାରି ଚାଲିଯାଉଛୁ—ବର୍ମା ବଂଶର ସୂର୍ଯ୍ୟ ଅସ୍ତ ହୋଇଯାଇଛି ......ମୋ ଛାତିଟା କଣ ଫାଟିଯାଉ ନାହିଁ ? ଚାରିବର୍ଷ ତଳେ ସେଇ ନାଲି ଶାଢ଼ୀଟା ପିନ୍ଧି ବୋହୂ ହୋଇ ପ୍ରଥମ କରି ଏ ଘରେ ପାଦ ଦେଇଥିଲୁ......ଶେଷରେ ଏମିତି ହେଲା !! (କଣ୍ଠରୁଦ୍ଧ) ଏ କଥା ଶୁଣିଲାବେଳକୁ ରିଟାୟାର୍ଡ଼ ମିଲିଟାରି ଅଫିସର ଗଗନ ବର୍ମାର ନିଷ୍ଠୁର ଛାତିଟା ମଧ୍ୟ ଫାଟିଯାଉଛିରେ ମା'—ସେ ସରଗ...... ସେ ସ୍ୱାସ୍ଥ୍ୟ ଚୋର କାହିଁ ?

ଶିଲ୍ପା ॥ ସେମିତି କହିଲେ ମୁଁ ଆଉ ଯାଇପାରିବି ନାହିଁ ବାପା (କାନ୍ଦୁଛି)

ମେ. ବର୍ମା ॥ (ଲୁହ ପୋଛିବା ପାଇଁ ଆଗେଇ ଗଲେ) ......ହାତ ବଢ଼େଇଲେ, ଫେରାଇ ନେଲେ) । ନା...ତୁ କାନ୍ଦ । ତୁ କାନ୍ଦିବୁନି ତ ଆଉ କାନ୍ଦିବ କିଏ ? (ହଠାତ ଭାଙ୍ଗିପଡ଼ିଲେ) ଅକାରଣରେ ତୋ ଭଳି ସୁନା ଝିଅଟାକୁ ଗୋଟାଏ ପଶୁ

ହାତରେ ସମ୍ପି ଦେଇ ତୋ ଜୀବନଟାକୁ ମୁଁ ନଷ୍ଟ କରି ପକାଇଛି (ନିଜେ କାନ୍ଦିଲେ ଦେହ ତାଙ୍କର ଥରିଉଠିଲା) କ'ଣ ବା ମୁଁ ତୋ ପାଇଁ କରିପାରେ ? କିଛି କରିପାରିବିନି ......(ତା' ପରେ ଆଗେଇଯାଇ) ଏ ବୃଦ୍ଧ ପାଗଳ ବାପାଟାକୁ ଭୁଲ୍ ବୁଝିବୁନି ମା' । ମୁଁ ତ ଏସବୁ ହେବ ବୋଲି ଜାଣିନଥିଲି......

ରିକ୍ତା ॥ ବାପା !! (ହୋ ହୋ ହେଇ କାନ୍ଦି ଉଠିଛି)

ମେ. ବର୍ମା ॥ (ହାତ ଯୋଡ଼ିଲେ । ରାଇଫଲ୍‌ଟାକୁ ରିକ୍ତାର ପାଦତଳେ ରଖିଦେଇ; I surrender. Major ବର୍ମା ଆଜି ରିକ୍ତାର ଲୁହ ପାଖରେ ଆତ୍ମ ସମର୍ପଣ କରୁଛି......(ଥରି ଥରି ନଇଁଆସିଲେ ମେ. ବର୍ମା ରିକ୍ତାର ପାଦତଳ ପର୍ଯ୍ୟନ୍ତ) ମତେ କ୍ଷମା କରିଦେ ମା'..... କ୍ଷମା କରିଦେ । ମୁଁ ଏ ଦୃଶ୍ୟ ଦେଖିପାରିବି ନାହିଁ ।

ରିକ୍ତା ॥ (ମେଜର ବର୍ମାଙ୍କୁ ଏପରି ମାନସିକ ଉତ୍ତେଜନା ଭିତରେ ଦେଖି ସହିନପାରି କାନ୍ଦି କାନ୍ଦି ସେଇଠି ତାଙ୍କର ପାଦ ଧୂଳି ନେଇଛି) । ବାପା !!

ମେ. ବର୍ମା ॥ (ବୁଲିଯାଉଥିଲେ; ପୁଣି ସୁନନ୍ଦାର ଟେଲିଭିଜନ ନିକଟକୁ ଯାଇ) ଦେଖି ପାରୁଛ ସୁନନ୍ଦା ? ତୁମ ତପୁର ଅତ୍ୟାଚାର ସହି ନପାରି ବର୍ମା ବଂଶର କୁଳବଧୂ ଆଜି ଘର ଛାଡ଼ି ଚାଲିଯାଉଛି । ଆଭିଜାତ୍ୟର ଦୁର୍ଗ ଉପରୁ ଗୋଟି ଗୋଟି ହୋଇ ଇଟା ପଥର କମିତ ଭୂଷୁଡ଼ି ପଡ଼ୁଛି ଦେଖ ସୁନନ୍ଦା.....(କାନ୍ଦି କାନ୍ଦି ହସିଲେ) ତୁମେ ଖୁବ୍ ସୁଖରେ ଅଛନା ସେଇଠି ? ଥାଅ । ଯୁଗ ଯୁଗ ଧରି ତାରା ହୋଇ ଜଳୁଥାଅ ସେଇଠି......ଜଳୁଥାଅ...କିନ୍ତୁ ସେଇ ମଦ୍ୟପଟା ଘରକୁ ଫେରିଲେ ଆଜି......ଆଜି......ମୁଁ ନିଶ୍ଚୟ ଆଜି

॥ ଶବ୍ଦ ପାଞ୍ଚ ॥

ତାଙ୍କୁ fire କରିବ······ମୋର ଏମିତି ପୁଅ ଦରକାର ନାହିଁ (ଚାଲିଗଲେ ଭାରି ପଦକ୍ଷେପ ନେଇ)

ଶିଖା ॥ (ଭିତରୁ ଆସି) ଭାଉଜ ! ରଞ୍ଜନ ଭାଇ ଆଜି ଚାଲିଯିବେ ?

ରକ୍ତା ॥ ମୁଁ ବି ଆଜି ଚାଲିଯାଉଛି ।

ଶିଖା ॥ କୁଆଡ଼େ ଘରକୁ ?

ରକ୍ତା ॥ ହଁ ।

ରଞ୍ଜନ ॥ (ପରଦା ଖୋଲି ଟିକିଏ ମୁହଁ ଦେଖାଇ) ରକ୍ତା—ଶୀଘ୍ର, ସମୟ ହୋଇଗଲାଣି ।

ରକ୍ତା ॥ ହଁ ଭାଇ (ଶିଖାକୁ) ହଁ ଶିଖା ମନେ ରଖିଥିବ...... କେତେ ଦିନ ପାଇଁ କିଏ ଜଣେ ଭାଉଜ ଥିଲା !

ଶିଖା ॥ ଭାଉଜ, ମନେ ଅଛି ନା ଭାଉଜ ? ତମେ ସେଦିନ କହିଥିଲ ମୋତେ ଶ୍ରେଷ୍ଠ ଭଉଣୀ ଭଳି ଅଧିକ ସ୍ନେହ କର ବୋଲି, ଏତେ ଶୀଘ୍ର ତମର ଶିଖାକୁ ତମେ ଭୁଲିଯାଉଛ······ ? ହଁ ଭାଉଜ ତମେ ଯାଅ...ଆଉ କିଛି ହେବନି ଯେ······ ମୁଁ ଖାଲି ଏକଲା ହୋଇଯିବି······କାନ୍ଦି କାନ୍ଦି ଲେଟି ପଡ଼ିଲେ ବି ଆଖିରୁ ଲୁହ ପୋଛିବା ପାଇଁ କେହି ନାହାନ୍ତି ······ବୋଉ ମରିଗଲା ପରେ ତମେ ଆସିଥିଲ ।

ରକ୍ତା ॥ (ରୁଦ୍ଧ କଣ୍ଠରେ) ଶିଖା ?

ଶିଖା ॥ ସତରେ ମୋତେ ଛାଡ଼ି ତମେ ଚାଲିଯାଉଛ ଭାଉଜ ? (ଶ୍ରେଷ୍ଠ ଶିଶୁଙ୍କ ଭଳି କାନ୍ଦି କାନ୍ଦି ରକ୍ତା ଉପରେ ମୁହଁ ରଖି କାନ୍ଦୁଛି ଶିଖା)

ରକ୍ତା ॥ ନା······ମୁଁ ଆଉ ପାରୁନି ଶିଖା······ମୁଁ ଆଉ ପାରୁନି (ବାହାରୁ କାର୍ ହର୍ଣ୍ଣ ଶୁଭୁଛି । ଝଡ଼ବେଗରେ ପଶିଆସି ପହଞ୍ଚୁଛି ତପନ । ପ୍ରାପ୍ତ ଜ୍ଞାନ ନାହିଁ କହିଲେ ଚଳେ । ଦେହର କିଛି ଅଂଶରେ ରକ୍ତର ଛିଟା)

॥ ଶେଷ ଛଅ ॥

ରକ୍ତା ॥ ତମେ......ତମର......

ଶିଖା ॥ ଭଇ ! ଏ କଣ ହୋଇଛି ତମର ଦେହସାରା ରକ୍ତ ?
(ଭିତରୁ ରାଇଫଲ୍ ନେଇ ଦଉଡ଼ି ଆସିଲେ ମେ. ବର୍ମା)

ମେ. ବର୍ମା ॥ Hands up ଇଞ୍ଜିନିୟର୍ । ଆଜ ମୁଁ ତୋ ଜୀବନ ନେବ
(କିନ୍ତୁ ରକ୍ତ ଛିଟା ଦେଖି ଅବାକ୍ ସ୍ତବ୍ଧ ହୋଇ ରହିଗଲେ
ସେ । ହାତରୁ ରାଇଫଲ୍ ଟା ଖସିଗଲା)

ତପନ ॥ ମୁଁ ଖୁନ୍ କରିଛି । ଗୋଟାଏ ଅଶୁଭ ଗ୍ରହକୁ ମୋ ରାସ୍ତାରୁ
ହଟାଇ ନେଇଛି......

ରକ୍ତା ॥ ନା...ତମେ...ତମେ ଏ କାମ କରିପାରନା......

ତପନ ॥ ଆକଣ୍ଠ ପିଇଛି ବୋଲି ମୁଁ ପାଗଳ ନୁହେଁ । ଆଖ
ପଛେନାପ୍ନକ ଗୁଣ୍ଡରେ ମୁଁ ଏଇ ହାତରେ ଛୁରୀ ଭୁଷି ଦେଇ
ଆସିଛି ! ବର୍ତ୍ତମାନ ହୃଏତ କିଛି ଶାନ୍ତି ମିଳିପାରେ ।

ରକ୍ତା ॥ କିନ୍ତୁ ଏ ଯେ କ'ଣ କଲ । କ'ଣ ହେବ ବର୍ତ୍ତମାନ ?

ତପନ ॥ ଆଉ ଭୟର କାରଣ ନାହିଁ । ସଙ୍ଗେ ସଙ୍ଗେ ଥାନାକୁ
ଫୋନ୍ କରିଦେଇ ଆସିଛି । ଭାବିଥିଲି ଥାନାକୁ ଯାଇ
ଆତ୍ମସମର୍ପଣ କରିଦେବ । କିନ୍ତୁ କେଜାଣି କାହିଁକି ଇଚ୍ଛା
ହେଲା ତୁମଠାରୁ ଶେଷ ବିଦାୟ ନେବାପାଇଁ ।

ରକ୍ତା ॥ ଓଃ ଭଗବାନ୍ !

ତପନ ॥ ରକ୍ତା, କେବେ ତୁମକୁ କିଛି ମାଗିନି । ଆଜ ଏଇ ଶେଷ
ମୁହୂର୍ତ୍ତରେ ଟିକିଏ କ୍ଷମା ଦେବନି ?

ରକ୍ତା ॥ ମୁଁ ଜାଣିଥିଲି ସକାଳର ପଥହରା ପଥିକରୂପେ ସଂଧ୍ୟାକୁ
ନିଷ୍ଟୟ ଘରକୁ ଫେରି ଆସିବ । କିନ୍ତୁ......

ତପନ ॥ କିନ୍ତୁ ଖୁବ୍ ଡ଼େରି ହୋଇଗଲା ରକ୍ତା । ତୁମକୁ କେବେ
ସ୍ନେହ କରିନି । ଅନ୍ତରଟା ଆଜ ଆର୍ତ୍ତନାଦ କରି ଉଠୁଛି

॥ ଶେଷ ସାତ ॥

......କିନ୍ତୁ ନା···ସ୍ପର୍ଶ କରି ତୁମର ପବିତ୍ରତା ନଷ୍ଟ କରିବିନି ।

(ପ୍ରବେଶ କରିଛନ୍ତି ସବ୍‌ଇନ୍‌ସପେକ୍ଟର)

ସ· ଇ· ।। ଆପଣ Executive ଇଞ୍ଜିନିୟର୍‌ ମିଷ୍ଟର ତପନ ବର୍ମା ।

ତପନ ।। (ହାତ ବଢ଼ାଇ) ହଁ !

ରଞ୍ଜନ ।। କ'ଣ ହୋଇଛି ? ଘଟଣା କ'ଣ ଇନ୍‌ସପେକ୍ଟର !

ସ· ଇ. ।। ସାର୍‌ ନମସ୍କାର—କେମ୍ବ୍ରିଜ୍‌ ସ୍କୁଲର ଶିକ୍ଷୟିତ୍ରୀ ଆଶା ପଟ୍ଟନାୟକଙ୍କୁ ଖୁନ୍‌ କରିବା ଅପରାଧରେ ମୁଁ ମିଷ୍ଟର ବର୍ମାଙ୍କୁ ଗିରଫ କରୁଛି ।

ଶିଖା ।। ଭାଇ, ତୁମ୍ଭେ ତାଙ୍କୁ ବଞ୍ଚାଅ ।

ରଞ୍ଜନ ।। ଆଇନ୍‌ ଦୋଷୀକୁ କେବେ ଛାଡ଼ି ଦିଏନା···ସେ ଯାଉ ।

ସ· ଇ· ।। ଆସନ୍ତୁ ମିଷ୍ଟର ବର୍ମା ।

ତପନ ।। ମୁଁ ଯାଉଛି ଶିଖା, ଭାବିବନି ମୁଁ ଖାଲି ପାପ କରୁଛି ବୋଲି । ଏ ପୃଥିବୀରେ ଅନେକ ପାପ କରନ୍ତି······ କାଦୁଅରେ ପଶନ୍ତି ପୁଣି ଉଠି ଝାଡ଼ିହୁଡ଼ି ହୋଇ ଆଗେଇ ଚାଲନ୍ତି । ତମେ ଅପେକ୍ଷା କର । ମୁଁ ନିଶ୍ଚୟ ଫେରି ଆସିବି ।

(ଚାଲିଗଲେ ତପନ ବର୍ମା ଓ ଇନ୍‌ସପେକ୍ଟର । ମେଜର ବର୍ମା ପଦଚାରଣ କଲେ)

ଶିଖା ।। ଭଗବାନ୍‌ ! ସବୁଦେଇ ମୋତେ ଶୂନ୍ୟ କରିଦେବାରେ ଯେ ତୁମ୍ଭର କି ଲାଭ ହେଲା···ଓଃ ମୁଁ ଆଉ ଏ ଦୃଶ୍ୟ ଦେଖିପାରୁନି ।

(ଶିଖା କାନ୍ଦି କାନ୍ଦି ବେହୋସ୍‌ ହୋଇଯାଇଛି, ଶିଖା ଓ ରଞ୍ଜନ ନେଇଯାଇଛନ୍ତି ଭିତରକୁ)

।। ଶହେ ଆଠ ।।

ମେ. ବର୍ମା ॥ (ମନକୁ ମନ) ଭଗବାନ । ଗୋଟିଏ ପଂଗୁ ଅଥବା ଭଗବାନଙ୍କୁ ଗୁହାରି ଜଣାଇ ଜଣାଇ ଋକ୍ତା ଅଜ୍ଞାନ ଅନ୍ଧକାର ଭିତରକୁ ଚାଲିଗଲା······ଭଗବାନଙ୍କୁ ଘୃଣା କରି ଶେଷରେ ଜଣେ ଖୁନୀ······(ହସି ଉଠିଲେ) ତେଣୁ ମୋର ଆଜି ତୁମକୁ ଗୋଟିଏ ପ୍ରଶ୍ନ ଭଗବାନ କେତେ ଦିନ ? କେତେ ଦିନ ଆଜି ଆମେ ଅନ୍ଧାରକୁ ପିଇ ଅନ୍ଧାରକୁ ଚକ୍ଷୁକରି ଆଲୁଅର ସ୍ୱପ୍ନ ଦେଖିଥିବୁ······ ? କୁହ...I change you······ or ......I shall shoot your door

(ସେଇ ସରଳ ପୋଷାକ ପିନ୍ଧି କାନ୍ଧରେ ତାର ଗଣ୍ଠିଲି ଧରି ଯେମିତି ଆସିଥିଲା ସେମିତି ଫେରିଯିବା ପୂର୍ବରୁ ଆସିଛି ମୁକ୍ତିକାନ୍ତ ବଂଗିଗୃହଠୁ—ଘର ଭିତରକୁ)

ମୁକ୍ତିକାନ୍ତ ॥ ମୁଁ ଯିବ । ଫେରିଯିବ ।

ମେ. ବର୍ମା ॥ କୋଉଠିକି ? ସବୁ ରାସ୍ତା ବନ୍ଦ ।

ମୁକ୍ତିକାନ୍ତ ॥ ଡ଼ାକ୍ତର ବସୁଙ୍କ ପାଖକୁ । ମୋର ଜ୍ଞାନ ସମ୍ପୂର୍ଣ୍ଣ ହୋଇନି । ଏ ପର୍ଯ୍ୟନ୍ତ ମୋର ମସ୍ତିଷ୍କ ଅପରିଣତ ।

ମେ. ବର୍ମା ॥ (ହସି ହସି) କହନ୍ତି ଡ଼ାକ୍ତର ବସୁ ? ଇଉପ୍ରେଟିସ୍ ନଦୀ କୂଳର ଆଜିଯାଏ ମଳୟ ନିବାସ ପର୍ଯ୍ୟନ୍ତ ମୁଁ ତାଙ୍କୁ ଖୋଜୁଛି ଖୋଜିବ......ତୁମକୁ ଦେଖି ଭାବିଥିଲି ପାଇଗଲି ବୋଲି, କିନ୍ତୁ ତୁମେ ତ ସିଏ ନୁହଁ ।

ମୁକ୍ତିକାନ୍ତ ॥ ମୋତେ ଆଜି ଗୋଟିଏ ଆଦର୍ଶ ଖୋଜିବାକୁ ପଡ଼ିବ ।

ମେ. ବର୍ମା ॥ ଆଦର୍ଶଟିଏ କ'ଣ ନିହାତି ଦରକାର ? ଅନ୍ଧାରକୁ ଆଦର୍ଶ କରୁନା ? (ହସିଲେ) ଯାଅ···ଯାଅ ମୁକ୍ତିକାନ୍ତ······ ଖୋଜ···ଆହୁରି ଖୋଜ···My blessed angel···. ପୃଣି ଥରେ ଖୋଜିବ ଯାଅ······ଆଜି ପଛକୁ ଚାହିଁବ ନାହିଁ······ଯାଅ······

॥ ଶେଷ ନାଅ ॥

(ଠକଠକ ଚାଲିଗଲେ) ମୁକ୍ତକାନ୍ତ ଧୀରେ ଧୀରେ ଚାଲି-
ଯାଉଛି; ଶିଖା ଆସି ଠିଆ ହୋଇଛି ।

ଶିଖା ।। ମୁକ୍ତକାନ୍ତ ! ତୁମ ସହିତ ମୋର କାହିଁକି ଦେଖା ହୋଇଥିଲା
କହିପାରିବ ? ତୁମେ ଏଠିକି ନ ଆସିଥିଲେ.........
(କଣ୍ଠ ଭାଙ୍ଗିପଡିଲା) । ତମ ସାଥିରେ ମୋର ପରିଚୟ
ନ ହୋଇଥିଲେ......( କାନ୍ଦ କାନ୍ଦ ) ମୋ ଜୀବନଟା ତ
ଅନାୟାସରେ କଟି ଯାଇ ପାରନ୍ତା...... ।

(ମୁକ୍ତକାନ୍ତ ପଛକୁ ଫେରିଚାହିଁନ । ଶିଖା ସେଇଠି ଏକାକୀ
ଠିଆ ହୋଇ କାନ୍ଦୁଛି । ଆବହ ସଙ୍ଗୀତ କରୁଣ ଓ ଗମ୍ଭୀର
ଆଲୋକ କ୍ରମଶଃ ମ୍ଳାନରୁ ମ୍ଳାନତର) ।

( ଯବନିକା ପଡ଼ିଲା )

